ସର୍ବଭାରତୀୟ ବହୁଭାଷୀ ନାଟକ ପ୍ରତିଯୋଗିତାରେ
ଶ୍ରେଷ୍ଠ ନାଟକ ରୂପେ ପୁରସ୍କୃତ

---

# ମୁଁ ଦୁହେଁ

କାର୍ତ୍ତିକ ଚନ୍ଦ୍ର ରଥ

ବୁକ୍‌ସ ଏଣ୍ଡ୍‌ ବୁକ୍‌ସ
ବିନୋଦ ବିହାରୀ, କଟକ-୭୫୩୦୦୨

# ମୁଁ ଦୁହେଁ • MUN DUHEN

ନାଟକ Drama


ନାଟ୍ୟକାର • By

**କାର୍ତ୍ତିକ ଚନ୍ଦ୍ର ରଥ Kartik Chandra Rath**

ଅଧ୍ୟାପକ, ଅର୍ଥନୀତି ବିଭାଗ Lecturer, Deptt. of Economics

ସାଲେପୁର କଲେଜ Salipur College

କଟକ Cuttack



ପ୍ରକାଶକ • Publisher

ଶ୍ରୀ କୃଷ୍ଣଚନ୍ଦ୍ର ବେହେରା Sri Krushna Chandra Behera

**ବୁକ୍ସ ଏଣ୍ଡ ବୁକ୍ସ Books & Books**

ବିନୋଦ ବିହାରୀ Binod Behari

କଟକ-୭୫୩୦୦୨ Cuttack-753002

ପ୍ରଚ୍ଛଦ-ଶିଳ୍ପୀ • Cover Design

**ଶ୍ରୀ ଅସିତ୍ ମୁଖାର୍ଜ୍ଜୀ Sri Asit Mukherjee**

ମୁଦ୍ରାକର • Printer

ଶ୍ରୀ ପ୍ରତାପ କୁମାର ଦାସ Sri Pratap Kumar Das

**ବ୍ରଜେନ୍ଦ୍ର ପ୍ରେସ୍ Brajendra Press**

ଗଙ୍ଗାମନ୍ଦିର Gangamandir

କଟକ-୭୫୩୦୦୧ Cuttack-753001

ପ୍ରଥମ ପ୍ରକାଶ • First Edition

୧୫ ଅଗଷ୍ଟ, ୧୯୭୮ 15 th. August, 1978

ମୂଲ୍ୟ • Price

ଟ ୫-୦୦ **Rs. 5-00**

ବିଶିଷ୍ଟ ସମାଜସେବୀ

କଳାବିକାଶ କେନ୍ଦ୍ରର ପ୍ରତିଷ୍ଠାତା

ଓଡ଼ିଶୀ ନୃତ୍ୟ, ସଙ୍ଗୀତ ତଥା ନାଟକର

ପ୍ରଧାନ ପରିପ୍ରଷ୍ଠୁରକ

ଶ୍ରୀଯୁକ୍ତ ବାବୁଲାଲ୍ ଦୋଶୀ

ଙ୍କୁ

# ଅଭିଯାନ

୧୯୭୮ ଫେବୃଆରୀ ମାସ ୧୦ ତାରିଖ ଠାରୁ ୨୩ ତାରିଖ ପର୍ଯ୍ୟନ୍ତ ଦୁଇ ସପ୍ତାହ ବ୍ୟାପୀ ଆହ୍ଲାବାଦ୍ ନାଟ୍ୟ ସଂଘ ଆନୁକୂଲ୍ୟରେ ଆହ୍ଲାବାଦ୍‌ର ପ୍ରୟାଗ ସଙ୍ଗୀତ ସମିତି ସଂଶ୍ଳିଷ୍ଟ ମେହେଟା ଅଡ଼ିଟୋରିୟମ୍‌ର ବିରାଟକାୟ ରଙ୍ଗାଳୟ ମଧ୍ୟରେ ଏକାଦଶ ନିଖିଳ ଭାରତ ବହୁଭାଷୀ ନାଟକ ପ୍ରତିଯୋଗିତା ସମାରୋହରେ ଅନୁଷ୍ଠିତ ହୋଇଯାଇଛି । ଏହି ପ୍ରତିଯୋଗିତାରେ ମଣିପୁର, ଆସାମ, ପଶ୍ଚିମବଙ୍ଗ, ଓଡ଼ିଶା, ବିହାର, ଉତ୍ତର ପ୍ରଦେଶ, ମଧ୍ୟ ପ୍ରଦେଶ, ହିମାଚଳ ପ୍ରଦେଶ, ମହାରାଷ୍ଟ୍ର, ଗୁଜୁରାଟ, ରାଜସ୍ଥାନ, ହରିଆନା, କାଶ୍ମୀର, ଆନ୍ଧ୍ର ପ୍ରଦେଶ, କର୍ଣ୍ଣାଟକ, ପଞ୍ଜାବ ତଥା ଦିଲ୍ଲୀ—୧୭ଟି ରାଜ୍ୟର ସର୍ବ ମୋଟ ୮୧ଟି ଦକ୍ଷ ଓ କୃତୀ ନାଟ୍ୟଦଳ ଅଂଶ ଗ୍ରହଣ କରିଥିଲେ ଏବଂ ସେମାନେ ହିନ୍ଦୀ, ଭୋଜପୁରୀ, ବଙ୍ଗଳା, ଓଡ଼ିଆ, ମଣିପୁରୀ, ଆସାମୀ, ଉର୍ଦ୍ଦୁ, ପଞ୍ଜାବୀ, ରାଜସ୍ଥାନୀ, ତାମିଲ, ତେଲୁଗୁ, ନେପାଳୀ, କନ୍ନଡ଼, ମରାଠୀ, ଗୁଜୁରାଟୀ, କାଶ୍ମୀରୀ, ହରିଆଣା ତଥା ଇଂରାଜୀ—୧୮ଟି ବିଭିନ୍ନ ଆଞ୍ଚଳିକ ଭାଷାରେ ବିଭିନ୍ନ ସ୍ୱାଦ ଓ ଶୈଳୀର ମୋଟ ୮୧ଟି ନାଟକ ପ୍ରଦର୍ଶନ କରିଥିଲେ । ପୁନଶ୍ଚ ଏହି ପ୍ରତିଯୋଗିତାରେ ଅଂଶ ଗ୍ରହଣକାରୀ ନାଟ୍ୟକାର, ନିର୍ଦ୍ଦେଶକ, ସଂଗଠକ, ନାଟ୍ୟଶିଳ୍ପୀ ତଥା ମଞ୍ଚଶିଳ୍ପୀମାନଙ୍କ ସଂଖ୍ୟା ପ୍ରାୟ ୧୫୦୦ । ଭାରତର ଏହି ସର୍ବବୃହତ୍ତ ନାଟକ ପ୍ରତିଯୋଗିତାରେ ଏହି ବିପୁଳ ନାଟ୍ୟଶିଳ୍ପୀ ସମାବେଶ ହିଁ ହେଉଛି ପ୍ରତ୍ୟେକ ପ୍ରତିଯୋଗୀ ଦଳ ତଥା ଶିଳ୍ପୀ ପାଇଁ ଶ୍ରେଷ୍ଠ ଉଦ୍ଦୀପନା ଓ ପ୍ରଚୁର ପ୍ରୋତ୍ସାହନର ପ୍ରକୃତ ପାଥେୟ ।

ବୋଧହୁଏ ଏକକାଳୀନ ପୃଥିବୀର ଅନ୍ୟ କୌଣସି ଦେଶରେ ଏ ଭଳି ବିପୁଳ ନାଟ୍ୟଶିଳ୍ପୀ ସମାବେଶ ବିରଳ ।

ଏହି ନାଟକ ପ୍ରତିଯୋଗିତାରେ କଟକର କଳା ବିକାଶ କେନ୍ଦ୍ର ଦ୍ୱାରା ପରିବେଷିତ ତଥା ମୋ ରଚିତ ଓ ନିର୍ଦ୍ଦେଶିତ ଆଞ୍ଚଳିକ ଓଡ଼ିଆ ଭାଷାର ନାଟକ 'ମୁଁ ଦୁହେଁ' ଏକ ସଙ୍ଗେ ରଚନା, ନିର୍ଦ୍ଦେଶନା, ଅଭିନୟ ତଥା ଦଳଗତ ପ୍ରଯୋଜନା କ୍ଷେତ୍ରରେ ଶ୍ରେଷ୍ଠ ସାଫଲ୍ୟ ପାଇଁ ଗୌରବପୂର୍ଣ୍ଣ ନଟରାଜ ଫଳକ ସହ ସ୍ୱରେଟି ପୁରସ୍କାର ଲାଭ କରିପାରିଛି । ବ୍ୟକ୍ତିଗତ ଭାବରେ ମୁଁ ରଚନା ଓ ନିର୍ଦ୍ଦେଶନା ପାଇଁ ପୁରସ୍କୃତ ହୋଇଥିଲା ବେଳେ ଏହି ନାଟକର ନାୟକ ଡାକ୍ତର ପ୍ରମୋଦ ରଞ୍ଜନ ମହାନ୍ତି ଅଭିନୟ ପାଇଁ ପୁରସ୍କୃତ ହୋଇଛନ୍ତି ।

କଳା ବିକାଶ କେନ୍ଦ୍ରର ଏହି ଅପୂର୍ବ ନାଟ୍ୟ-ସାଫଲ୍ୟ ଓଡ଼ିଆ ନାଟକ ତଥା ନାଟ୍ୟଶିଳ୍ପୀମାନଙ୍କ ପାଇଁ କମ୍ ସାର୍ଥକତା ଓ ସମ୍ଭାବନାର ପରିଚୟ ନୁହେଁ ।

'ମୁଁ ବୁଦ୍ଧେଁ' ଏକ ପ୍ରୟୋଗବାଦୀ ପ୍ରତୀକଧର୍ମୀ ମନସ୍ତାତ୍ତ୍ୱିକ ନାଟକ । ଜଣେ ଅପରାଧଚେତନ (guilt conscious) ଯୁବକର ମାନସିକ ମନ୍ଥନ ହିଁ ଏହି ନାଟକର କେନ୍ଦ୍ରବିନ୍ଦୁ । ସ୍ୱୟଂ ଅପରାଧୀ ହେବାରୁ ଅନ୍ୟକୁ ମଧ୍ୟ ସେହି ଦୃଷ୍ଟିରେ ଦେଖିବା ଓ ବର୍ଣ୍ଣବାଦର ସଂଗୋପନୀୟ ପ୍ରବୃତ୍ତି ହିଁ ଏହାର ନେପଥ୍ୟ ସ୍ୱର ଏବଂ ସର୍ବୋପରି ମାନବିକ ମୂଲ୍ୟବୋଧର ସଂହାର ଜନିତ ଅପରାଧ ଓ ତା'ର ଉଦ୍ଭଟ ଅନ୍ତିମ ପରିଣତି ହେଉଛି ଏହାର ସୃଷ୍ଟି ସ୍ୱାକ୍ଷର । ଜନୈକ ନାଟ୍ୟ-ସମାଲୋଚକଙ୍କ ଦୃଷ୍ଟିରେ 'ନାଟକଟି ମିଥ୍ (myth), ରୋମାନ୍ସ୍, ବ୍ୟର୍ଥତା, ହାସ୍ୟରସ, କୌତୂହଳ, ଦୁଃଖ, ବିରହ, ବିସ୍ମୟ, ଦ୍ୱନ୍ଦ୍ୱ ସସ୍‌ପେନ୍‌ସ ଏବଂ ଶେଷରେ ଏକ ଅସ୍ୱାଭାବିକ ପରିଣତି ଦ୍ୟୋତିତ ଅନେକଗୁଡ଼ିଏ ସ୍ୱରର ଏକ ସୁନ୍ଦର ସିଂଫୋନୀ ରୂପେ ଗଢ଼ି ଉଠିଛି । ସୃଷ୍ଟିଧର୍ମୀ ରଚନା ସହ କଳାଧର୍ମୀ ନିର୍ଦ୍ଦେଶନା ଉନ୍ନତ ଶୈଳୀର ମଞ୍ଚ ପରିକଳ୍ପନା, ଆଲୋକ ସମ୍ପାତ ଓ ଶବ୍ଦ ପରିସ୍ଫୁଟନ, ତଥା ପ୍ରତ୍ୟେକଟି ଚରିତ୍ରରେ ନାଟ୍ୟଶିଳ୍ପୀମାନଙ୍କ ବୁଦ୍ଧିଦୀପ୍ତ ଓ ଗତିଶୀଳ ଅଭିନୟ ସମଗ୍ର ନାଟକଟିକୁ ଏକ ଅଭିନବ ମନୁମେଣ୍ଟ୍ ରୂପେ ଉପସ୍ଥାପିତ କରିପାରିଛି ।'

ସାଢ଼େ ତିନି ହଜାର ଆସନ ବିଶିଷ୍ଟ ମେହେଟା ଅଡ଼ିଟୋରିୟମ୍‌ର ବିରାଟକାୟ ରଙ୍ଗାଳୟରେ ଫେବ୍ରୁଆରୀ ୧୮ ତାରିଖ ସାନ୍ଧ୍ୟ ଅଧିବେଶନର ପ୍ରଥମ ନାଟକ ରୂପେ ପ୍ରତିଯୋଗୀ ୫୧ତମ ଦଳ କଳା ବିକାଶ କେନ୍ଦ୍ରର କୃତୀ ନାଟ୍ୟ–ଶିଳ୍ପୀମାନେ 'ମୁଁ ବୁଦ୍ଧେଁ' ନାଟକ ପରିବେଷଣ କରିଥିଲେ ।

ପ୍ରତିଯୋଗିତା ଅବସରରେ ଅନୁଷ୍ଠିତ ହୋଇଥିବା ସର୍ବଭାରତୀୟ ଥିଏଟର୍ ସେମିନାର୍‌ରେ କଟକର ଦୁଇ ଜଣ ବିଶିଷ୍ଟ ନାଟ୍ୟବନ୍ଧୁ ଓଡ଼ିଶା ହାଇକୋର୍ଟର ଆଡ଼ଭୋକେଟ୍ ଶ୍ରୀ ପୁରଞ୍ଜନ ରାୟ ଓ ତାଙ୍କର ସହଧର୍ମିଣୀ ଶୈଳବାଳା ମହିଳା କଲେଜର ଇଂରାଜୀ ବିଭାଗ ମୁଖ୍ୟ ଅଧ୍ୟାପିକା ଶ୍ରୀମତୀ ଅଳକା ରାୟ ଦୁଇଟି ଭିନ୍ନ ଭିନ୍ନ ଅଧିବେଶନରେ ପୌରୋହିତ୍ୟ କରିଥିଲେ । ଶ୍ରୀମତୀ ରାୟ ସେମିନାରରେ 'ବିଗତ ଦଶକରେ ଓଡ଼ିଆ ଓ ବଙ୍ଗଳା ନାଟକ କ୍ଷେତ୍ରରେ ନୂତନ ପରୀକ୍ଷା ଓ ପ୍ରୟୋଗ' ସମ୍ପର୍କରେ ଏକ ଗବେଷଣାମୂଳକ ସନ୍ଦର୍ଭ ପାଠ କରିଥିଲେ ।

ଗତ ଏଗାର ବର୍ଷ ଧରି ଅନୁଷ୍ଠିତ ହେଉଥିବା ଏହି ସର୍ବଭାରତୀୟ ନାଟକ ପ୍ରତିଯୋଗିତାରେ ଆଞ୍ଚଳିକ ଓଡ଼ିଆ ଭାଷାର ଏହି ନାଟକଟି ଏକାସଙ୍ଗେ ସାତୋଟି ପୁରସ୍କାର ଲାଭ କରିବା ଏହା ହିଁ ପ୍ରଥମ । ୧୯୭୧ ମସିହାରେ କଟକର କଳାତୀର୍ଥ ନାଟ୍ୟ-ସଂସ୍ଥା ମଧ୍ୟ ଆହ୍ଲାବାଦ୍‌ଠାରେ ଅନୁଷ୍ଠିତ ହୋଇଥିବା ଚତୁର୍ଥ ନାଟକ ପ୍ରତି-ଯୋଗିତାରେ ମୋ ରଚିତ ଓ ନିର୍ଦ୍ଦେଶିତ ନାଟକ 'ଜୀବନ-ଯଜ୍ଞ' ପରିବେଷଣ କରି ଶ୍ରେଷ୍ଠ ନାଟକ ରୂପେ ଗୌରବପୂର୍ଣ୍ଣ ନଟରାଜ ଫଳକ ଲାଭ କରିଥିଲେ ।

'ମୁଁ ବୁଢ଼ୀ' ପ୍ରତିଯୋଗିତାରେ ଯୋଗ ଦେବାର ଅବ୍ୟବହିତ ପୂର୍ବରୁ ଫେବୃଆରୀ ୧୬ ତାରିଖ ସନ୍ଧ୍ୟାରେ କଳା ବିକାଶ କେନ୍ଦ୍ରରେ ଏକ ପ୍ରଦର୍ଶନୀ ପ୍ରଯୋଜନା ରୂପେ ମଞ୍ଚସ୍ଥ ହୋଇଥିଲା । ଏହି ଉପଲକ୍ଷେ ଆୟୋଜିତ ଉତ୍ସବରେ ରାଜ୍ୟ ଉଚ୍ଚଶିକ୍ଷା ବିଭାଗ ନିର୍ଦ୍ଦେଶକ ପ୍ରଫେସର ବିଧୁଭୂଷଣ ଦାସ ମୁଖ୍ୟ ଅତିଥି ରୂପେ ଯୋଗ ଦେଇ ଆମକୁ ପ୍ରେରଣା ପ୍ରଦାନ କରିଥିଲେ । ପ୍ରାରମ୍ଭରେ ତାଙ୍କ ପ୍ରତି ଏବଂ ଉତ୍ସବର ସଭାନେତ୍ରୀ ସଂସ୍କୃତିସେବୀ ଶ୍ରୀମତୀ ଉମେଶ୍ୱରୀ ସାହୁଙ୍କ ପ୍ରତି ମୁଁ ଗଭୀର କୃତଜ୍ଞତା ଜ୍ଞାପନ କରୁଛି ।

ନାଟକଟିର ପ୍ରସ୍ତୁତି, ପ୍ରଯୋଜନା, ସର୍ବଭାରତୀୟ ପ୍ରତିଯୋଗିତାରେ ଯୋଗଦାନ, ସଫଳତା ପରେ ସମ୍ବର୍ଦ୍ଧନା ପ୍ରତ୍ୟେକ କ୍ଷେତ୍ରରେ ବ୍ୟକ୍ତିଗତ ଭାବେ ମୋତେ ତଥା କୃତୀ ନାଟ୍ୟଶିଳ୍ପୀମାନଙ୍କୁ ଆଶୀର୍ବାଦ ପ୍ରଦାନ କରି ଆସିଥିବାରୁ କେନ୍ଦ୍ରର ପ୍ରତିଷ୍ଠାତା ସମ୍ପାଦକ ଶ୍ରୀ ବାବୁଲାଲ୍ ଦୋଶୀଙ୍କ ନିକଟରେ ମୁଁ ଋଣୀ ।

ପ୍ରଯୋଜନା ଓ ପ୍ରକାଶନ ଦିଗରେ କଳା ବିକାଶ କେନ୍ଦ୍ର 'ଅଭିନୟ' ବିଭାଗର କର୍ମକର୍ତ୍ତା ବୃନ୍ଦ ଶ୍ରୀ ପୁରଞ୍ଜନ ରାୟ, ଶ୍ରୀମତୀ ଅଳକା ରାୟ, ଶ୍ରୀ କ୍ଷୀରୋଦ ପ୍ରସାଦ ମହାନ୍ତି, ଶ୍ରୀ ବୈକୁଣ୍ଠ ନାଥ ମହାନ୍ତି, ନାଟ୍ୟକାର କାର୍ତ୍ତିକ କୁମାର ଘୋଷ; ସାଲେପୁର କଲେଜର ଅଧ୍ୟକ୍ଷ ଶ୍ରୀ ଗଜେନ୍ଦ୍ର ନାଥ ଆଚାର୍ଯ୍ୟ, ଅର୍ଥନୀତି ବିଭାଗର ମୁଖ୍ୟ ଅଧ୍ୟାପକ ଶ୍ରୀ ଦୟାନିଧି ପାଲ, ରାଜନୀତି ବିଜ୍ଞାନ ବିଭାଗର ମୁଖ୍ୟ ଅଧ୍ୟାପକ ଶ୍ରୀ ପ୍ରତାପ ଚନ୍ଦ୍ର ମହାନ୍ତି ପ୍ରମୁଖ ଶୁଭେଚ୍ଛୁମାନଙ୍କ ପ୍ରେରଣାକୁ ମୁଁ ସ୍ମରଣ କରୁଛି ।

ମୋର ଅନ୍ତରଙ୍ଗ, ସୁନାମଧନ୍ୟ ନାଟ୍ୟ-ଶିଳ୍ପୀ ଶ୍ରୀ ଦୀନେଶ ଚନ୍ଦ୍ର ରାଉତଙ୍କ ସୁଚିନ୍ତିତ ପରିଚାଳନା, ସଙ୍ଗୀତକାର ଶ୍ରୀ ବାସୁଦେବ ରଥଙ୍କ ମନୋଜ୍ଞ ସଙ୍ଗୀତ ସଂଯୋଜନା, ଶ୍ରୀ ବିଜନ କୁମାର ପରିଡ଼ାଙ୍କ ଦକ୍ଷ ଦୃଶ୍ୟ-ପରିଚାଳନା ତଥା ଶ୍ରୀ ପ୍ରିୟଭୂଷଣ ଚନ୍ଦ ଓ ଶ୍ରୀ ପ୍ରଦ୍ୟୁମ୍ନ କୁମାର ଦାସଙ୍କ ସୁସମନ୍ୱିତ ବ୍ୟବସ୍ଥାପନା ପାଇଁ ମୁଁ ସେମାନଙ୍କୁ ସାଧୁବାଦ ଜଣାଉଛି । ସର୍ବୋପରି 'ମୁଁ ବୁଢ଼ୀ'ର ସମ୍ମାନିତ ଶିଳ୍ପୀଗଣ ତଥା ବୈଷୟିକ ସହଯୋଗୀବୃନ୍ଦଙ୍କ ନାଟ୍ୟ ପ୍ରୟାସ ଓ ସାଧନାକୁ ସ୍ମରଣ କରି ସେମାନଙ୍କୁ ମୋର ଆନ୍ତରିକ ଅଭିନନ୍ଦନ ଜ୍ଞାପନ କରୁଛି ।

ପୁସ୍ତକଟିର ପ୍ରଚ୍ଛଦ-ପଟ ଶିଳ୍ପୀ ଶ୍ରୀ ଅଜିତ୍ ମୁଖାର୍ଜ୍ଜି ମୋର ନାଟ୍ୟ-ଚିନ୍ତାକୁ ଜୀବନ୍ତ କରି ତୋଳିଥିବାରୁ ସେ ମୋର ଧନ୍ୟବାଦାର୍ହ । ବୁକ୍ସ ଏଣ୍ଡ୍ ବୁକ୍ସର ପରିଚାଳକ, ମୋର ବନ୍ଧୁ ଶ୍ରୀ କୃଷ୍ଣଚନ୍ଦ୍ର ବେହେରା ଓ ଶ୍ରୀ ନବକିଶୋର ବେହେରା ଏହାର ପ୍ରକାଶନ ଦାୟିତ୍ୱ ବହନ କରି ମୋତେ ସଦିଚ୍ଛା ଜଣାଇଥିବାରୁ ମୁଁ ଉଭୟଙ୍କ ନିକଟରେ କୃତଜ୍ଞତା ସ୍ୱୀକାର କରୁଛି ।

'ମୁଁ ବୁଢ଼ୀ'ର ରଚନା କାଳ ୧୯୭୬ ଏବଂ ଏହା ଅନ୍ୟାନ୍ୟ ଭାଷାରେ ଅନୂଦିତ ।

ବାନା ବଗିଚା,
କଟକ-୨୭୫୦୦୧

କାର୍ତ୍ତିକ ଚନ୍ଦ୍ର ରଥ
୧୦ ଅଗଷ୍ଟ ୧୯୭୮

# ଅଭିନୟ

## ୧୧ଶ ନିଖିଳ ଭାରତ ବହୁଭାଷୀ ନାଟକ ପ୍ରତିଯୋଗିତା

ମେହେନ୍ଦା ଅଭ୍ୟୋଶମ୍, ପ୍ରୟାଗ ସଙ୍ଗୀତ ସମିତି

ଆହ୍ଲାବାଦ୍

୧୮ ଫେବୃଆରୀ ୧୯୭୮

ପରବେଷକ : କଳା ବିକାଶ କେନ୍ଦ୍ର, କଟକ

---

ତୃତୀୟ ଶିଷ୍ୟ /

ନାୟକ ॥ ପ୍ରମୋଦ ରଞ୍ଜନ ମହାନ୍ତି

ଉପନାୟକ ॥ ବିଜୟ କୁମାର ରାୟ

ତୃତୀୟ ପୁରୁଷ ॥ ସଚ୍ଚିଦାନନ୍ଦ ମହାନ୍ତି

ନାୟିକାର ପିତା ॥ ଦେବେନ୍ଦ୍ର କୁମାର ଦାସ

ଉପନାୟିକାର ପତି ॥ ତାପସ କୁମାର ଦାସଗୁପ୍ତ

ଗୁରୁଦେବ ॥ କୌଶିକ କୁମାର ଘୋଷ

ପ୍ରଥମ ଶିଷ୍ୟ ॥ ସୁବ୍ରତ କୁମାର ମୁଖାର୍ଜ୍ଜି

ଦ୍ୱିତୀୟ ଶିଷ୍ୟ ॥ ବଂଶୀଧର ଦେହୁରୀ

ନାୟିକା /

ଉପନାୟିକା ॥ ନମ୍ରତା ଦାସ

---

ନିର୍ଦ୍ଦେଶନା : କାର୍ତ୍ତିକ ଚନ୍ଦ୍ର ରଥ

ସହଯୋଗିତା : ଦୀପେନ୍ କୁମାର ଘୋଷ

ଅରୁଣ କୁମାର ପଟ୍ଟନାୟକ

# ଅଭିରୂପ

ତୃତୀୟ ଶିଷ୍ୟ : ନାୟକ

ଉପନାୟକ

ତୃତୀୟ ପୁରୁଷ

ନାୟିକାର ପିତା

ଉପନାୟିକାର ପତି

ଗୁରୁଦେବ

ପ୍ରଥମ ଶିଷ୍ୟ

ଦ୍ୱିତୀୟ ଶିଷ୍ୟ

ନାୟିକା : ଉପନାୟିକା



[ ନାଟକଟିରେ ଦୁଇଟି ନାରୀ ଚରିତ୍ର ରହିଥିଲେ ହେଁ
ଜଣେ ଅଭିନେତ୍ରୀ ମଧ୍ୟ ଉଭୟ ଚରିତ୍ରରେ ଅଭିନୟ କରି ପାରିବେ । ]

# ଅଭିମୁଖ

'ମୁଁ ତୁମେ' ନାଟକର ପ୍ରୟୋଗ ଦୃଷ୍ଟିରୁ ସମଗ୍ର ରଙ୍ଗମଞ୍ଚକୁ ଛଅଟି ଜୋନ୍‌ରେ ବିଭକ୍ତ କରାଯାଇଛି । ମଞ୍ଚର ଶେଷାଂଶର ମଧ୍ୟଭାଗକୁ ପ୍ରଥମ ଜୋନ୍, ପ୍ରଥମ ଜୋନ୍‌ର ସମ୍ମୁଖଭାଗର ଉଭୟ ପାର୍ଶ୍ୱକୁ ଦ୍ୱିତୀୟ ଓ ତୃତୀୟ ଜୋନ୍, ଏହି ଦୁଇ ଜୋନ୍‌ର ମଧ୍ୟ-ସମ୍ମୁଖଭାଗକୁ ଚତୁର୍ଥ ଜୋନ୍ ଏବଂ ମଞ୍ଚର ପ୍ରଥମାଂଶରେ ଚତୁର୍ଥ ଜୋନ୍‌ର ଦୂରନ୍ତ ଉଭୟ ପାର୍ଶ୍ୱକୁ ପଞ୍ଚମ ଓ ଷଷ୍ଠ ଜୋନ ରୂପେ ଗ୍ରହଣ କରାହୋଇଛି । ନାଟକଟିର ବିଷୟବସ୍ତୁ/ଘଟଣାବଳୀ ଅବିରାମ ଗତିରେ ଗୋଟିଏ ପରେ ଗୋଟିଏ ଜୋନ୍‌ରେ ସଘଟିତ ହୋଇ ଚାଲିଛି ॥

ଚତୁର୍ଥ ଜୋନ୍ ବ୍ୟତୀତ ଅନ୍ୟାନ୍ୟ ପ୍ରତ୍ୟେକ ଜୋନ୍‌ରେ ସ୍ୱଳ୍ପ ଉଚ୍ଚତା ବିଶିଷ୍ଟ ଗୋଟିଏ ଲେଖାଁ ବର୍ଗାକାର ଆସନ ରହିଛି । ପୁନଶ୍ଚ ସାଇକ୍ଲୋରାମା ସମ୍ମୁଖରେ ଉପରୋକ୍ତ ଆସନଠାରୁ ସାମାନ୍ୟ ଉଚ୍ଚତା ବିଶିଷ୍ଟ ଅନ୍ୟ ପାଞ୍ଚଟି ବର୍ଗାକାର ଆସନ ଗୋଟିଏ ସରଳରେଖାରେ ରଖାଯାଇଛି ॥

ମଞ୍ଚରେ ନାଟକର ସମସ୍ତ ଚରିତ୍ର ପ୍ରାରମ୍ଭରୁ ପରିଶେଷ ପର୍ଯ୍ୟନ୍ତ ଉପସ୍ଥିତ ରହିଛନ୍ତି । ଅଭିନୟରତ ଚରିତ୍ରଗୁଡ଼ିକ କୌଣସି ଏକ ଜୋନ୍‌ରେ ସକ୍ରିୟ ରହିଥିଲା ବେଳେ ଅବଶିଷ୍ଟ ଅଭିନୟବିରତ ଚରିତ୍ରଗୁଡ଼ିକ ନିଶ୍ଚଳ ହୋଇ ସାଇକ୍ଲୋରାମା ସମ୍ମୁଖର ଆସନଗୁଡ଼ିକ ଉପରେ / ପାର୍ଶ୍ୱରେ / ପଶ୍ଚାତ୍‌ରେ ରହି ଦୃଶ୍ୟ / ଘଟଣାର ମୁଖ୍ୟତଃ ସ୍ଥାନ କିମ୍ବା କାଳ ଅଥବା ପାତ୍ରର ଭାବ ଅନୁଯାୟୀ ବିଭିନ୍ନ ସମବେତ ଭଙ୍ଗୀ ଦ୍ୱାରା ଭିନ୍ନ ଭିନ୍ନ କମ୍ପୋଜିସନ୍ ସୃଷ୍ଟି କରିଛନ୍ତି । ଦୃଶ୍ୟ-ସଜ୍ଜା / ସେଟିଙ୍ଗ୍‌ବିହୀନ ଏହି ନାଟକଟିରେ ଅଭିନୟରତ ଚରିତ୍ରଗୁଡ଼ିକର ନେପଥ୍ୟରେ ଅଭିନୟବିରତ ଚରିତ୍ରଗୁଡ଼ିକ ଦ୍ୱାରା ସୃଷ୍ଟ କମ୍ପୋଜିସନ୍ ହିଁ ସଙ୍କେତ ଦେଇଛି ସଜ୍ଜା ବା ସେଟିଙ୍ଗ୍‌ର ॥

ବିଶେଷତଃ ସାଇକ୍ଲୋରାମା ତଥା ପ୍ରତ୍ୟେକ ଜୋନ୍‌ରେ ଏହି ଗତିଶୀଳ ନାଟକର ଦୃଶ୍ୟ ପରିବର୍ତ୍ତନ ସହ ବିଭିନ୍ନ ରଙ୍ଗର ଆଲୋକର ପ୍ରୟୋଗ କରାଯାଇଛି ॥

ତେବେ ନାଟକଟିର ପ୍ରଯୋଜନା / ପରିବେଷଣକୁ ନୂତନରୁ ନୂତନତର କରିବା ଦିଗରେ ପ୍ରଯୋଜକ/ନିର୍ଦ୍ଦେଶକ ସଂପୂର୍ଣ୍ଣ ରୂପେ ନିଜର ସ୍ୱତନ୍ତ୍ର ଓ ସୃଜନଶୀଳ ପରିକଳ୍ପନା / ପରୀକ୍ଷା / ପ୍ରୟୋଗର ମଧ୍ୟ ଉପଯୋଗ କରି ପାରନ୍ତି ॥

# ପ୍ରଥମ : ଚିରନ୍ତନ

[ନେପଥ୍ୟରୁ
ମାଙ୍ଗଳିକ ଶଙ୍ଖଧ୍ୱନି
ହେବା ମାତ୍ରେ
ପରଦା ଖୋଲିଛି
ଏବଂ
କ୍ରମଶଃ
ସାଇକ୍ଲୋରମା
ହାଲଦିଆ ରଙ୍ଗର
ଆଲୋକରେ
ଉଦ୍ଦୀପ୍ତ ହୋଇଛି ।
ସେଥି ସହ
ଦୃଶ୍ୟମାନ୍ ହୋଇଛି
ସିଲ୍‌ହଟ୍‌ରେ
କେତୋଟି ଚରିତ୍ର
ଦ୍ୱାରା ସୃଷ୍ଟ
ଏକ କମ୍ପୋଜିସନ୍ ।
କମ୍ପୋଜିସନ୍‌ରେ
କ୍ରମାନ୍ୱୟରେ
ବାମରୁ ରହିଛନ୍ତି
ନାୟିକାର ପିତା,
ଉପନାୟିକାର ପତି,

୨

ନାୟିକା,
ଉପନାୟକ
ଓ ତୃତୀୟ ପୁରୁଷ ।
ଏବଂ
ଏଇ କମ୍ପୋଜିସନ୍
ହେଉଛି
ଗୁରୁକୁଳ ଆଶ୍ରମର
ଏକ ପ୍ରତୀକଧର୍ମୀ
ସ୍କେଚ୍ ॥
ମଞ୍ଚର
ପ୍ରଥମ ଜୋନ୍
ଆଲୋକିତ
ହୋଇଛି ।
ସମସ୍ତ ପୂର୍ବାହ୍ନ ।
ଏକ ଉଚ୍ଚ ଆସନରେ
ଉପବିଷ୍ଟ ହୋଇଛନ୍ତି
ଗୁରୁଦେବ ।
ତାଙ୍କ ସମ୍ମୁଖରେ
ଉପବେଶନ
କରିଛନ୍ତି
ତିନି ଜଣ ଶିଷ୍ୟ ।
ଗୁରୁଦେବ
ତଥା ପ୍ରଥମ
ଓ ଦ୍ୱିତୀୟ ଶିଷ୍ୟ
ଗେରୁବସ୍ତ୍ର
ପରିଧାନ
କରିଥିଲା ବେଳେ
ତୃତୀୟ ଶିଷ୍ୟ
ସାଧାରଣ ଭାବେ
ସାଂପ୍ରତିକ କାଳର
ପୋଷାକ
ପରିଧାନ କରି

ଅନ୍ୟ ଦୁଇ ଶିଷ୍ୟଙ୍କ
ଗହଣରେ
ଉପବେଷ୍ଟନ
କରିଛନ୍ତି ।]

ଗୁରୁଦେବ : ବତ୍ସଗଣ !
ଆଜି ତୁମ୍ଭମାନଙ୍କର
ଜ୍ଞାନାର୍ଜନର ଅନ୍ତିମ ପରୀକ୍ଷା ।
ଗୁରୁକୁଳ ଆଶ୍ରମର
ଏହି ପବିତ୍ର ପରିବେଶ ମଧ୍ୟରେ
ଦୀର୍ଘ ଦିନ ଧରି
ତୁମ୍ଭେମାନେ
ବିଦ୍ୟାଭ୍ୟାସ କରି ଆସିଛ ।
ମୋର ବିଶ୍ୱାସ,
ତୁମ୍ଭେ ସମସ୍ତେ
ଏହି ପରୀକ୍ଷାରେ
ନିଶ୍ଚୟ ଉତ୍ତୀର୍ଣ୍ଣ ହେବ ।

ତିନିହେଁ :
(ଦଣ୍ଡାୟମାନ
ହୋଇ)
ଏଥିପାଇଁ
ଆପଣଙ୍କ ଆଶୀର୍ବାଦ ହିଁ
ଆମର କାମ୍ୟ,
ଗୁରୁଦେବ ।

ଗୁରୁଦେବ :
(ସ୍ୱ-ଆସନରୁ
ଉଠି)
ବର୍ତ୍ତମାନ
ମୁଁ ତୁମ୍ଭ ତିନିଜଣଙ୍କୁ
ତିନୋଟି କପୋତ ଦେଉଛି ।

(ଆସନର
ପଶ୍ଚାତ୍ ଭାଗରୁ
ଉଠାଇ
ପ୍ରତୀକଧର୍ମୀ
କପୋତ
ଆଣିଛନ୍ତି ।
ପ୍ରଥମ ଶିଷ୍ୟଙ୍କୁ
ଦେଇ)

ପ୍ରଥମ କପୋତଟିକୁ
ତୁମ୍ଭେ ନଅ ।

(ତୃତୀୟ ଶିଷ୍ୟ ପ୍ରତି)

ଏଇଟି
ମୁଁ ତୁମକୁ ଦେଉଛି ।

(ଦ୍ୱିତୀୟ ଶିଷ୍ୟ ପ୍ରତି)

ଏବଂ
ଶେଷ ପକ୍ଷୀଟିକୁ
ତୁମ୍ଭେ ନଅ ।

(କହିଚାଲ୍ ରହି)

କିନ୍ତୁ ସାବଧାନ !
ତୁମ ପ୍ରତ୍ୟେକଙ୍କୁ
କପୋତ ପକ୍ଷୀକୁ ନେଇ
ଏ ଭଳି ନିର୍ଜ୍ଜନ···
ନିଭୃତ ସ୍ଥାନରେ
ଏକାନ୍ତ ଗୋପନରେ
ବଧ କରିବାକୁ ହେବ,
ଯାହା କି
କେହି ଦେଖି ପାରିବେ ନାହିଁ
କିମ୍ବା
କେହି ଜାଣି ପାରିବେ ନାହିଁ !

ତିନହେଁ : ଆପଣଙ୍କର ଏହି ଆଗ୍ରହ
ଅବଶ୍ୟ ପୂର୍ଣ୍ଣ ହେବ ।

ଗୁରୁଦେବ : ତେବେ ଯାଅ—
ଅବଲମ୍ବେ କର୍ତ୍ତବ୍ୟ ନିଜର
ସମ୍ପାଦନ କର ।
ତିନହେଁ : ଯଥା ଆଦେଶ,
ଗୁରୁଦେବ ।

[ ପ୍ରତ୍ୟେକ ଶିଷ୍ୟ
କପୋତ ସଙ୍ଗ
ବିଦାୟ ନେଇ
ବିଭିନ୍ନ ଦିଗକୁ
ଯାତ୍ରା କରିଛନ୍ତି ।
ପ୍ରଥମ ଶିଷ୍ୟ
ଦକ୍ଷିଣ ପାର୍ଶ୍ୱକୁ
ଗତି କରି
ମଞ୍ଚର
ଷଷ୍ଠ ଜୋନ୍‌କୁ
ଏବଂ
ଦ୍ୱିତୀୟ ଶିଷ୍ୟ
ବାମ ପାର୍ଶ୍ୱକୁ
ଗତି କରି
ମଞ୍ଚର
ପଞ୍ଚମ ଜୋନ୍‌କୁ
ଆସିଛନ୍ତି ।
ତୃତୀୟ ଶିଷ୍ୟ
ସମ୍ମୁଖକୁ
ଅଗ୍ରସର ହୋଇ
ନିଶ୍ଚଳ
ହୋଇ ପଡ଼ିଛନ୍ତି ।
ପ୍ରଥମ ଜୋନ୍‌ରେ
ଗୁରୁଦେବ
ସମ୍ମୁଖକୁ
ପଶ୍ଚାତ୍ କରି

ହସ୍ଥଳ
ହୋଇ ପଡ଼ିବା
ମାଙ୍କେ
ଉକ୍ତ କୋନ୍‌ରୁ
ଆଲୋକ
ଅପସର ଯାଇଛୁ ।
ଏବଂ
ପଞ୍ଚମ ଓ ଷଷ୍ଠ
କୋନ୍‌ରେ
ଆଲୋକ ଆସିଛୁ ।।

ପ୍ରଥମ
ଓ
ଦ୍ୱିତୀୟ ଶିଷ୍ୟ
ଏକ ସଙ୍ଗେ
ଅତୀବ
ସତର୍କତାର ସହ
କପୋତ ପଂକ୍ଷୀ
ଦ୍ୱୟଙ୍କୁ
ବଧ କରିବାର
ଭଙ୍ଗୀ ସହ
ହସ୍ଥଳ ହୋଇ
ପଡ଼ିଛନ୍ତି ।
ପୁନଶ୍ଚ
ଉଭୟ କୋନ୍‌ରେ
ଆଲୋକ
ସଙ୍କୁଚିତ
ହୋଇ ଆସିଛୁ ।।

ହଠାତ୍
ଫୁଟ୍ ଲାଇଟ୍‌ରୁ
ଆଲୋକର

ଏକ ଶୁଭ୍ର ରେଖା
ଆସି
ତୃଷାର୍ତ୍ତ ଶିଷ୍ୟର
ମୁଖମଣ୍ଡଳକୁ
ଆଲୋକିତ
କରିଛି ।

ସେ
କପୋତକୁ
ବଧ କରିବା ପାଇଁ
ହିଂସ୍ର ମନ ନେଇ
ଉପକ୍ରମ
କରିଛନ୍ତି ।
କିନ୍ତୁ
ବହୁ ପ୍ରୟାସ ସତ୍ତ୍ୱେ
ପକ୍ଷୀଟିକୁ
ମାରିବାରେ
ସେ ସଂପୂର୍ଣ୍ଣ
ବ୍ୟର୍ଥ ହୋଇଛନ୍ତି ।

କ୍ରୋଧ, ଭୟ,
ବିସ୍ମୟ ଓ
ବ୍ୟର୍ଥତାର
ମିଶ୍ରଭାବରେ
ସେ ଦ୍ରବୀଭୂତ
ହେବା ମାତ୍ରେ
ଆଲୋକ
ଅପସରି ଯାଇଛି ।।]

[ପ୍ରଥମ ଜୋନ୍‌ରେ
ଆଲୋକ ଆସିଛି ।
ସମସ୍ତ ସାଧ୍ୱାଙ୍କ ।]

ପ୍ରଥମ ଶିଷ୍ୟ :
(ପ୍ରତ୍ୟାବର୍ତ୍ତନ
କରି)

ଗୁରୁଦେବ,
ମୁଁ କପୋତ ପକ୍ଷୀକୁ ନେଇ
ଅନେକ ସ୍ଥାନକୁ ଗଲି ।
କିନ୍ତୁ
ସବୁଠି କୋଳାହଳ ।
ଅନେକ ଲୋକଙ୍କ ମେଳ ।
ଦୂର ବନସ୍ଥଳୀର
ଶେଷ ସୀମା ପର୍ଯ୍ୟନ୍ତ
ଖୋଜି ବୁଲିଲି ।
ଅଥଚ
ସବୁଠି ଅସଂଖ୍ୟ ଆଖି ।
ଅସୁମାରି ପଶୁ,
ନଚେତ୍ ପକ୍ଷୀ ।
ଶେଷରେ
କ୍ଳାନ୍ତ ସନ୍ଧ୍ୟାର ନିଷିଦ୍ଧ ପ୍ରହରରେ
ଦୂର ପ୍ରାନ୍ତରର
ଏକ ଏକାନ୍ତ ନିର୍ଜନ ସ୍ଥାନରେ
ରୁକ୍ଷ ପତ୍ରହୀନ ବୃକ୍ଷର ଉହାଡ଼ରେ
ତୀକ୍ଷ୍ଣ ଅସ୍ତ୍ରଦ୍ୱାରା
ମୁଁ ସେଇ କପୋତ ପକ୍ଷୀକୁ
ବଧ କରିଛି !!
ଏବଂ
ଏହାର କୌଣସି ଚିହ୍ନ ନାହିଁ,
ବର୍ଣ୍ଣ ନାହିଁ,
ଗନ୍ଧ ସୁଦ୍ଧା ନାହିଁ ।

ଗୁରୁଦେବ : ଉତ୍ତମ ।

ଦ୍ୱିତୀୟ ଶିଷ୍ୟ :
(ପ୍ରତ୍ୟାବର୍ତ୍ତନ କରି)

ଗୁରୁଦେବ,
ମୁଁ କପୋତ ପକ୍ଷୀକୁ ନେଇ
ଅନେକ ଘୂରିଲି—
ପ୍ରାନ୍ତରର ଶୂନ୍ୟ ଇଲାକା,
ପର୍ବତର ଶୀର୍ଷ ସୋପାନ,
ଉପତ୍ୟକାର ଅନ୍ଧ ମୁହାଁଣି,
ନଦୀର ବିସ୍ତୀର୍ଣ୍ଣ ସୈକତ ।
ଅଥଚ
କୌଣସି ହେଲେ ସ୍ଥାନକୁ
ମୁଁ ଉପଯୁକ୍ତ ବୋଲି
ଭାବି ପାରିଲି ନାହିଁ,
କୌଣସି ହେଲେ ସ୍ଥାନକୁ
ଏକାନ୍ତ ବୋଲି
ମଣି ପାରିଲି ନାହିଁ ।
ଶେଷରେ
ଏକ ଉତ୍କଣ୍ଠିତ ମୁହୂର୍ତ୍ତରେ
ମୁଁ ହଠାତ୍ ଆବିଷ୍କାର କଲି—
ନିଘଞ୍ଚ ଅରଣ୍ୟର
ଏକ ନିଭୃତ ଗୁମ୍ଫା !
ଏବଂ
ସେହି ନିଭୃତ ଗୁମ୍ଫାର
ନିରନ୍ଧ୍ର ଅନ୍ଧକାର ମଧ୍ୟରେ
ଅତି ସଂଗୋପନରେ
ମୋର ଏଇ ହାତରେ
କପୋତ ପକ୍ଷୀର
ବେକ ମୋଡ଼ି
ତା'କୁ ମାରି ଦେଇଛି !

କିନ୍ତୁ
ଏହା ତଥ୍ୟହୀନ,
ପ୍ରମାଣଶୂନ୍ୟ !

ଗୁରୁଦେବ : ଅତି ଉତ୍ତମ !

(ଉଚ୍ଚ
ଆସନରେ
ଦଣ୍ଡାୟମାନ
ହୋଇଛନ୍ତି)

ତୃତୀୟ ଶିଷ୍ୟ :
(ଜୀବିତ
କପୋତ ସହ
ପ୍ରତ୍ୟାବର୍ତ୍ତନ କରି)

ମୁଁ କ୍ଷମାପ୍ରାର୍ଥୀ,
ଗୁରୁଦେବ !
ଏହି କପୋତ ପକ୍ଷୀକୁ ମାରିବାରେ
ମୁଁ ଅକ୍ଷମ !
ଆପଣଙ୍କ ନିର୍ଦ୍ଦେଶାନୁଯାୟୀ
ଏ ପୃଥିବୀ ପୃଷ୍ଠରେ
ସେ ଭଳି ଏକ ନିର୍ଜ୍ଜନ···
ନିଭୃତ ସ୍ଥାନର
ମୁଁ ସନ୍ଧାନ ପାଇ ପାରିଲି ନାହିଁ,
ଯେଉଁଠାରେ
କପୋତ ପକ୍ଷୀକୁ ମାରିଲେ,
କେହି ଦେଖି
ବା ଜାଣି ପାରିବେ ନାହିଁ ।
ଅନେକ ପ୍ରୟାସ ମୁଁ କଲି ।
କିନ୍ତୁ ପ୍ରତ୍ୟେକ କ୍ଷେତ୍ରରେ
ମୋତେ ନିରାଶ ହେବାକୁ ପଡ଼ିଲା ।

କାରଣ,
ଜୀବ-ହତ୍ୟା ଭଳି
ଏହି ଜଘନ୍ୟ କାର୍ଯ୍ୟକୁ
ଅନ୍ୟ କେହି ଦେଖୁ ବା ନ ଦେଖୁ
ଅନ୍ତତଃ
ଏହି କପୋତ ପକ୍ଷୀ
ନିଜର ନିଷ୍ପାପ···କାତର
ଗୋଲ ଗୋଲ ଆଖି ଦଓଟିରେ
ଜଳ ଜଳ କରି
ଅବଶ୍ୟ ଦେଖି ପାରୁଛି···
ନିଜର ମୃତ୍ୟୁମୁଖୀ କରାଳ-ଗ୍ରାସ୍ଥାକୁ
ସ୍ପଷ୍ଟ ରୂପେ
ଅନୁଭବ କରି ପାରୁଛି ।
ତେଣୁ ଜୀବିତ କପୋତ ସହ
ପ୍ରତ୍ୟାବର୍ତ୍ତନ କରିବାକୁ
ମୁଁ ବାଧ୍ୟ ହୋଇଛି ।

(ଗୁରୁଦେବଙ୍କ
ପାଦତଳେ
କପୋତଟିକୁ
ଥୋଇ)

ଏହି ଅପରାଧ···
ଏହି ପାପ କରିବା ପାଇଁ
ମୁଁ ସମ୍ପୂର୍ଣ୍ଣ ଅସମର୍ଥ !

ଗୁରୁଦେବ :
(ଆନନ୍ଦ
ଗଦ୍ ଗଦ୍ ହୋଇ)

ପ୍ରକୃତରେ
ମୁଁ ତୁମ୍ଭର ଏହି ଉତ୍ତରରେ
ଅତୀବ ସନ୍ତୁଷ୍ଟ ।

ତୁମେ ହିଁ ମୋର ଆଦର୍ଶ ଶିଷ୍ୟ ।
ଜ୍ଞାନାର୍ଜନର
ଏହି ଅନ୍ତିମ ପରୀକ୍ଷାରେ
ତୁମେ ହିଁ କେବଳ
ଉତ୍ତୀର୍ଣ୍ଣ ହୋଇ ପାରିଛ ।
ପାପ-ପୁଣ୍ୟର ଏହି ଜ୍ଞାନ
ଯୁଗ ଯୁଗ ଧରି
ମାନବକୁ ଉଜ୍ଜୀବିତ କରାଉଥିବ ।
ମୁଁ ତୁମକୁ ଆଶୀର୍ବାଦ କରୁଛି—
ତୁମେ ଯଶସ୍ୱୀ ହୁଅ !
ମହୀୟାନ୍ ହୁଅ !
ତୁମ ଜୀବନର ଆଗାମୀ ପଥ
ମଙ୍ଗଳମୟ ହେଉ !!

[ତୃତୀୟ ଶିଷ୍ୟ
କ୍ରମଶଃ ସମ୍ମୁଖକୁ
ଅଗ୍ରସର ହୋଇ
ନିଶ୍ଚଳ
ହୋଇ ପଡ଼ିଛି ।
ମଞ୍ଚ ଅନ୍ଧକାର
ହୋଇ ଆସିଛି ।]

ଗୁରୁଦେବ : ପାପ—
ଯେତେ ଶ୍ରେଷ୍ଠ ହେଉ ପଛେ
ତାହା ନିଶ୍ଚିତ ଭାବେ ପାପ !
ଅପରାଧ—
ଶ୍ରେଷ୍ଠ ହେଉ ବା ବଡ଼ ହେଉ
ଶାସ୍ତି ହିଁ
ତାହାର ପରିଣାମ !!

[ପ୍ରତିଧ୍ୱନିତ ହୋଇଛି ।]

# ଦ୍ୱିତୀୟ : ବର୍ତ୍ତମାନ

[ସାଇକ୍ଲୋରାମା
ନୀଳ ଆଲୋକରେ
ନିମଗ୍ନ ହୋଇଛି ।
ପୃଷ୍ଠଭୂମିରେ
ଅନ୍ୟ ଚରିତ୍ରମାନେ
ଅନ୍ୟ ଏକ
କମ୍ପୋଜିସନ୍
ସୃଷ୍ଟି କରିଛନ୍ତି—
ହୁଏତ
ଏକ ପାର୍କ,
ଅଥବା
ରେସ୍ତୋରାଁ,
ଅନ୍ୟଥା
କୌଣସି ଏକ
ସର୍ବସାଧାରଣ ସ୍ଥାନ ।
ସିଲ୍‌ହୁଟ୍‌ରେ
ବାମରୁ
କ୍ରମାନ୍ୱୟରେ
ରହିଛନ୍ତି—
ଉପନାୟିକାର ପିତା,
ପ୍ରଥମ ଶିଷ୍ୟ,
ନାୟିକା,
ଦ୍ୱିତୀୟ ଶିଷ୍ୟ

ଓ ଗୁରୁଦେବ
ତଥା
ନାୟିକାର
ପଶ୍ଚାତ୍ ଭାଗରେ
ନାୟିକାର ପିତା ।
ଉପନାୟକ
ଏବଂ
ବୃଦ୍ଧାସ୍ଥ ପୁରୁଷ
ନିସ୍ତବ୍ଧ ହୋଇ
ରହିଛନ୍ତି ॥

ମଞ୍ଚର
ଚତୁର୍ଥ କୋଣ୍
ଆଲୋକିତ
ହୋଇଛି ।

ସମସ୍ତ ସାୟାହ୍ନ ।

ପୂର୍ବ ପରିଚିତ
ବୃଦ୍ଧାସ୍ଥ ଶିଷ୍ୟ
ଅର୍ଥାତ୍
ନାୟକ ଯୁବକ
ଗମ୍ଭୀର,
ଚିନ୍ତାମଗ୍ନ
ଏବଂ
ନିଶ୍ଚଳ ।
ବୃଦ୍ଧ ବୃଦ୍ଧାସ୍ଥ ପୁରୁଷ
ହଠାତ୍
ହସି ଉଠିଛନ୍ତି
ଏବଂ
ପ୍ରୌଢ଼
ଉପନାୟକଙ୍କ
ସହ

ଅଗ୍ରସର
ହୋଇଛନ୍ତି ।
ପୁନଶ୍ଚ
ଉଭୟେ
ଭିନ୍ନ ଭିନ୍ନ
ଭଙ୍ଗୀରେ
ନିଶ୍ଚଳ
ହୋଇ ପଡ଼ିଛନ୍ତି ।

ନାୟକ
ସନ୍ଦିଗ୍ଧ
ହୋଇଉଠି
ବସ୍ତୁସ୍ଥିର ସହ
ଉଭୟଙ୍କୁ
ନିରୀକ୍ଷଣ କରିଛନ୍ତି ।
ଏବଂ
ପ୍ରଥମେ
ଉପନାୟକ,
ତା'ପରେ
ତୃତୀୟ ପୁରୁଷଙ୍କୁ
ପରିକ୍ରମା କରି
ମଞ୍ଚର
ଷଷ୍ଠ କୋନ୍‌କୁ
ଚାଲି ଆସିଛନ୍ତି ।

ଅବିଲମ୍ବେ
ଉକ୍ତ କୋନ୍‌
ଆଲୋକିତ ହୋଇଛି ।
ଉପନାୟକ
ମଧ୍ୟ
କ୍ରମଶଃ
ଷଷ୍ଠ କୋନ୍‌କୁ ଆସି
ବସିଛନ୍ତି ।

ପର ମୁହୂର୍ତ୍ତରେ
ତୃତୀୟ ପୁରୁଷ
ହସି ହସି
ଉଭୟଙ୍କ
ନିକଟକୁ
ଆସିଛନ୍ତି ।
ଚତୁର୍ଥ କୋଣ୍‌ରୁ
ଆଲୋକ
ଅପସର
ଯାଇଛି ।। ]

ତୃତୀୟ ପୁରୁଷ : Good evening men !

ଦୁହେଁ :
(ନୀରବ)

ତୃତୀୟ ପୁରୁଷ : ଆଶ୍ଚର୍ଯ୍ୟ !
No respond.
ଆପଣ କେତେବେଳେ ଆସିଲେ ?

କିଛି କହିବେନି ?
କିଛି ଯାଏ ଆସେନି ।
ମୁଁ ଜାଣେ,
ଆପଣ ଦୁହେଁ
ଠିକ୍ ଆସିଲା ବେଳେ ହିଁ
ଆସିଥିବେ ।
ମୋର କିନ୍ତୁ
ଆଜ ଟିକେ ଡେରି
ହୋଇଗଲା ।
ମୁଁ ଦୁଃଖିତ ।

ତଥାପି no reply !
ଦେଖନ୍ତୁ,
ଆପଣ ଦୁହେଁ
ଅନେକ ଦିନ ହେଲା
ଏଠିକି ଆସୁଛନ୍ତି ।
ସାମ୍ନାସାମ୍ନି ଅନେକ ସମୟ ଧରି
ବସି ରହୁଛନ୍ତି ।
ପୁଣି ଉଠି
ଚାଲି ଯାଉଛନ୍ତି ।
ଅଥଚ
କେହି କେବେ କାହାରି ସହ
ଗପସପ ତ ଦୂରର କଥା
ପଦେ କଥା କହିଲା ଭଳି
ମୋର କାହିଁ ମନେ ପଡୁନି ।
ଆଜି ବି ଦୁହେଁ ଚୁପ୍‌ଚାପ୍ ।

(ବ୍ୟସ୍ତ ହୋଇ)

ଏଇ ରେଷ୍ଟୁରାଣ୍ଟର ବାହାରେ
ଅସଂଖ୍ୟ ଲୋକଙ୍କ କୋଳାହଳ···
ହଟ୍ଟଗୋଳ
ଚାଲିଥିଲା ବେଳେ
ଭିତରେ
ଏତେଟା ନୀରବତା···
ଏଇ ଭୟଙ୍କର ଶୂନ୍ୟତାକୁ
ମୁଁ ଆଦୌ tolerate କରି ପାରୁନି !!

ଦୁହେଁ : ନା !

ତୃତୀୟ ପୁରୁଷ : ହିଁ···ହିଁ,
କୁହ ।
କିଛି ଗୋଟାଏ କୁହ···
କିଛି ଗୋଟାଏ ଆରମ୍ଭ କର ।

ମୁଁ ଜାଣେ,
ନିଶ୍ଚୟ କିଛି ଗୋଟାଏ
ଅଜବ ରହି ଯାଇଚି !

ଦୁହେଁ : ହଁ !!

ତୃତୀୟ ପୁରୁଷ : କ'ଣ ସେ lacunaeଟା ?

ଦୁହେଁ : ପରିଚୟ !

ତୃତୀୟ ପୁରୁଷ :
(ହସି ଦେଇ)

ପରିଚୟ ?
ଆପଣଙ୍କ ସହ
ମୋର କେମିତି ପରିଚୟ ହେଲା,
କହି ପାରିବେ ?
ମୁଁ ବି କହି ପାରିବିନି ।
ସତ କହିବାକୁ ଗଲେ
ଆମେ କାହାରି ବିଷୟରେ ହେଲେ
କହି ପାରିବିନି—
କେବେ ଆଉ କେମିତି
ପରିଚୟ ହେଇଚି ।
ଆମେ ନିଜ ଜୀବନରେ
ପ୍ରତିଦିନ
ଅନେକ ଲୋକଙ୍କୁ ଭେଟୁଁ,
କିନ୍ତୁ
ସେମାନଙ୍କ ସହ କ'ଣ ପରିଚିତ
ହେଇ ପାରୁଁ ?
ମୁଁ ଜାଣିବାରେ
ପରିଚୟ ହେଉଚି
କେବଳ ଗୋଟାଏ ମାନସିକ ସଂଯୋଜନା…
a mental link !

ତେଣୁ
ଏଇ link କେତେବେଳେ,
କୋଉଠି,
କେମିତି ହେବ
ତା' କେହି କହି ପାରିବେନି ।

ଦୁହେଁ : ଆପଣ ବୋଧେ
ଠିକ୍ କହୁଛନ୍ତି ।
କାହିଁ ଆଗରୁ ତ କେବେ
ଏ କଥା କହୁ ନ ଥିଲେ ?

ତୃତୀୟ ପୁରୁଷ : ଅନେକ ଦିନ ହେଲା
କହିବି ବୋଲି ଭାବୁଥିଲି,
ହେଲେ ଆଜ
patience ହରେଇବାରୁ
କହିବାକୁ ବାଧ୍ୟ ହେଲି ।
ମୁଁ ଜାଣିବାରେ
ଏଇ ପୃଥିବୀ ପୃଷ୍ଠରେ
ମଣିଷ ହେଉଛି ଏକମାତ୍ର ପ୍ରାଣୀ,
ଯେ କି ନିଜ ହୃଦୟର ଭାବକୁ—
ଆନନ୍ଦ ହେଲେ ବାଣ୍ଟିବା ପାଇଁ
ଅଥବା
ଦୁଃଖ ହେଲେ ହାଲୁକା କରିବା ପାଇଁ—
ଅନ୍ୟ ଆଗରେ ପ୍ରକାଶ ନ କରି
କେବେହେଲେ ରହି ପାରେନି ।

ଦୁହେଁ : ହଁ,
ଆମ କଥା
ଆମେ କହିବୁ…
ମନ ଖୋଲି କହିବୁ ।

ତୃତୀୟ ପୁରୁଷ : ତା' ହେଲେ ଆଉ ଡେରି କାହିଁକି ?
Let's us go and drink
ସମୟ ଖୁବ୍ ସୁନ୍ଦର ଭାବେ କଟିଯିବ ।
ଦୁହେଁ : Drink ଟା
ଏଇ ମୁହୂର୍ତ୍ତରେ ଜରୁରୀ ନୁହେଁ ।
ଜୀବନଟାରେ ଇ ଯା'ର
ପ୍ରଚୁର ଉତ୍ତେଜନା ଭରିରହିଚି,
ସେଠି drinkର ଭୂମିକା ଖୁବ୍ ସୀମିତ ।
ତୃତୀୟ ପୁରୁଷ : ଆଉ ମୁଁ କହେଁ—
ଚାଲ ସମସ୍ତେ ମିଶି
drink କରିବା ।
Drink କଲେ ନିଶା ଧରିବ ।
ନିଶା ହେଲେ ନିଦ ଆସିଯିବ ।
ନିଦରେ ଶୋଇ ପଡ଼ିଲେ
ଅପକର୍ମ,
ଅପରାଧ,
ପାପ ଇତ୍ୟାଦି
କିଛି କରିବାର ସୁଯୋଗ ନ ଥିବ ।
ଏ ସବୁ ନ କଲେ
ଈଶ୍ୱର କହିଚନ୍ତି—
ସ୍ୱର୍ଗରେ ସ୍ଥାନ ମିଳିବ ।
ସ୍ୱର୍ଗ ଯିବା ପାଇଁ
ଚାଲ ସମସ୍ତେ ମିଶି
drink କରିବା !!
Drink....!
Drink....!!

(ଖୁବ୍ ଜୋର୍‌ରେ
ହସି ହସି
ପ୍ରସ୍ଥାନ
କରିଛନ୍ତି ।)

[ତୃତୀୟ ପୁରୁଷଙ୍କୁ
ବିସ୍ମୟ ସହକାରେ
ଅନୁଧାବନ କରି
ନାୟକ
ଓ
ଉପନାୟକ
ପ୍ରଥମ ଜୋନ୍‌କୁ
ଆସିଛନ୍ତି ।
ଷଷ୍ଠ ଜୋନ୍‌ରୁ
ଆଲୋକ
ଅପସରି ଯାଇ
ପ୍ରଥମ ଜୋନ୍
ଆଲୋକିତ
ହୋଇଛି ।



କମ୍ପୋଜିସନ୍‌ରେ
ତା' ସହ
ପରିବର୍ତ୍ତନ ଘଟିଛି ।
ତୃତୀୟ ପୁରୁଷ
ଓ
ନାୟିକାର ପିତା
କମ୍ପୋଜିସନ୍‌ର
ଉଭୟ ପ୍ରାନ୍ତକୁ ଯାଇ
ଛିଡ଼ା ହୋଇ
ଦୁଇଟି
ବର୍ତ୍ତୁଳର
ଧାରଣା
ସୃଷ୍ଟି କରିଛନ୍ତି ।।
ତା' ପରେ—]

ନାୟକ : ଆପଣ ?

ଉପନାୟକ : ଆପଣ ?

ନାୟକ : ହଁ, ମୁଁ !

ଉପନାୟକ : ହଁ, ମୁଁ !

ନାୟକ : ନା,

ମୁଁ କହୁଥିଲି···

ଉପନାୟକ : ନା,

ମୁଁ କହୁଥିଲି···

ନାୟକ : ଆପଣ କେତେବେଳେ ଆସିଲେ ?

ଉପନାୟକ : ଆପଣ କେତେବେଳେ ଆସିଲେ ?

ନାୟକ : ଆଶ୍ଚର୍ଯ୍ୟ

ଉପନାୟକ : ଆଶ୍ଚର୍ଯ୍ୟ ଆଶ୍ଚର୍ଯ୍ୟ !

(ହସି ଉଠିଛନ୍ତି)

[ ଉପନାୟକ
ହସି ହସି
ଷଷ୍ଠ କୋନ୍‌କୁ ଆସି
ବସିଛନ୍ତି ।
ନାୟକ
କୌତୁହଳବଶତଃ
କିଛି
ବୁଝି ନ ପାରି
ତାଙ୍କୁ ଅନୁସରଣ
କରିଛନ୍ତି ।।
ପ୍ରଥମ କୋନ୍‌ରୁ
ଆଲୋକ
ନିର୍ବାପିତ
ହେବା ପୂର୍ବରୁ
ଷଷ୍ଠ କୋନ୍
ଆଲୋକିତ
ହୋଇଛି ।। ]

ନାୟକ : ଦେଖନ୍ତୁ···
ଉପନାୟକ : ମୁଁ ତ
ଆପଣଙ୍କୁ ହିଁ କେବଳ ଦେଖୁଛି ।
ନାୟକ : ମୋ ସାମ୍ନାରେ
ଆପଣ ହିଁ ତ ଅଛନ୍ତି !
ଉପନାୟକ : ହଁ, ଦୁହେଁ !
ନାୟକ : ସେଇ ଜ୍ଞାନୀ ପୁରୁଷ କହୁଥିଲେ—
ଏଠି ଘରପଟେ ଖୁବ୍ ନିଃଶବ୍ଦତା···
ଅନେକ ଶୂନ୍ୟତା ଭରି ରହିଛି ।
ଉପନାୟକ : ଅଥଚ
ଆମେ ଏଠି ଉପସ୍ଥିତ ଅଛୁଁ !
ନାୟକ : ଆପଣଙ୍କୁ ଦେଖି ମୋ ମନରେ
ଗୋଟାଏ ପ୍ରଶ୍ନ ଉଠୁଛି···
ଉପନାୟକ : ଆପଣଙ୍କୁ ଦେଖି ମୋ ମନରେ ବି
କୌତୂହଳ ସୃଷ୍ଟି ହେଉଛି ।
ନାୟକ : ମୋର ମନେ ହେଉଛି
ଆପଣଙ୍କ ମନରେ
ଅନେକ ଗୋଲାପ ଫୁଲ
ଫୁଟି ଉଠୁଛି ।
ସତେ ଯେମିତି
ଆପଣ ଅନେକ ଅନେକ
ମିଠା ମିଠା ସ୍ୱପ୍ନର
ପ୍ରତୀକ୍ଷା କରି ରହିଛନ୍ତି ।
ଉପନାୟକ :
(ହସିଉଠି)
କ'ଣ କହିଲ···?
ଓଃ···ଗୋଲାପ ଫୁଲ ?
ମିଠା ମିଠା ସ୍ୱପ୍ନ ?
ତୁମେ ଅଭିନୟ କର, ନାଟକରେ ?

ନାୟକ : ମୁଁ ?
ଉପନାୟକ : ହଁ,
ତୁମେ ?
ନାୟକ : ମୋର କନ୍ତୁ
ଗୋଟାଏ ପ୍ରଶ୍ନ ଥିଲା ?
ଉପନାୟକ : Childishness !
ନାୟକ : ମୁଁ ନା ମୋର ପ୍ରଶ୍ନ ?
ଉପନାୟକ : ଉଭୟ !
ନାୟକ : ଆପଣ ଚା'ହେଲେ
ମୋର ଏଇ childishnessଟାକୁ
ପ୍ରୌଢ଼ତ୍ୱର ଆଖ୍ୟା ଦେଇ ପାରନ୍ତି ।
ପ୍ରଶ୍ନର କୌଣସି ବୟସ ନ ଥାଏ ।
ଉପନାୟକ : କନ୍ତୁ
ତୁମେ ଯୋଉ ପ୍ରଶ୍ନ କଲ,
ତା'ର ଗୋଟାଏ ନିର୍ଦ୍ଦିଷ୍ଟ ବୟସ ରହିଛ,
ଠିକ୍ ତୁମର ଯେତକ ।
ମୁହଁଟା ଲାଲ…
ଆଖିରେ ଉନ୍ମାଦନା !
ନାୟକ : ଆଜ୍ଞା,
କ୍ଷମା କରିବେ—
ମୁଁ ଯେତେବେଳେ
ଆପଣଙ୍କୁ ପ୍ରଶ୍ନ କରିଥିଲି,
ଠିକ୍ ସେହି ମୁହୂର୍ତ୍ତରେ—
ଆପଣଙ୍କ ଆଖି
ଆଉ ଚେହେରାର ମାନଚିତ୍ର
ଠିକ୍ ସେଇଭଳି ରହିଥିଲା ।
ଆପଣଙ୍କ ମନର ଚିତ୍ରପଟେ
କେବଳ ସ୍ୱପ୍ନ ଇ ସ୍ୱପ୍ନ
ଖେଳି ବୁଲୁଥିଲ ।

ଉପନାୟକ : ବେଶ୍ ତ...
ତୁମ ଆଖି ତ ଖୁବ୍ ତୀକ୍ଷ୍ଣ !
ନାୟକ : ମୁଁ ତା'ହେଲେ କ'ଣ ଭୁଲ୍ କହିଲି ?
ଉପନାୟକ : ନା ।
ନାୟକ : ତେବେ ନିଶ୍ଚୟ ଆପଣ
ନିଜ ପ୍ରେମିକାର ପ୍ରତୀକ୍ଷାରେ
ବସି ରହିଛନ୍ତି !

ଉପନାୟକ :
(ହସି ହସି)
ତୁମର ଏ ପ୍ରଶ୍ନ ହେଉଛି—
ଯୌବନର ପ୍ରତୀକ...
Symbol of the youth !
Straight...
short cut
and condensed !
ମୁଁ ନିଶ୍ଚୟ ଏହାର
ଉତ୍ତର ଦେବି ।
କିନ୍ତୁ ତା'ପୂର୍ବରୁ
ମୁଁ ଜାଣିବାକୁ ଚାହେଁ—
ଯାହାକୁ ଉତ୍ତର ଦେବି,
ସେ କେତେଦୂର
ମତେ ଗ୍ରହଣ କରିପାରିବ ?
ନାୟକ : ତା' ମାନେ...?
ଉପନାୟକ : ମାନେ
ଆଜିର ଦୁନିଆଁରେ
ଯେତେ ପ୍ରକାରର crisis
ସବୁର ମୂଳରେ ହେଉଛି
proper
communicationର ଅଭାବ ।

ବର୍ତ୍ତମାନର ପରିସ୍ଥିତରେ
କେହି କାହାରିକୁ
ଗ୍ରହଣ କରିବାକୁ
ଅଥବା ବୁଝିବାକୁ
ଆଦୌ ପ୍ରସ୍ତୁତ ନୁହନ୍ତି
ତେଣୁ ମୁଁ ଚାହେଁ—
ମୁଁ ଯାହା କହିବି,
ତୁମେ ତାହାକୁ ଗ୍ରହଣ କର···
accept କର ।

ନାୟକ : କରିବି···
ନିଶ୍ଚୟ କରିବ ।

ଉପନାୟକ : ତା'ହେଲେ
ମୁଁ ଗୋଟାଏ ପ୍ରଶ୍ନ
ପଚାରିବାକୁ ଚାହେଁ ?

ନାୟକ :
(ହସି ହସି)
ସତରେ
ଆପଣ ଖୁବ୍ seasoned···
cool minded ରାଜମାତଙ୍କ !
ଉତ୍ତର ଦେବା ପରିବର୍ତ୍ତେ
ଓଲଟା ପ୍ରଶ୍ନ ପଚାରିବା
ଆରମ୍ଭ କରି ଦେଲେଣି ।

ଉପନାୟକ : ଏଇଟା ନହାତ ଦରକାର ।

ନାୟକ : ଠିକ୍ ଅଛି,
ପଚାରନ୍ତୁ ।

ଉପନାୟକ : ତୁମେ କେବେ
କାହାରିକୁ ପ୍ରେମ କରିଚ ?
କହିପାରିବ,
ପ୍ରେମିକା କାହାକୁ କହନ୍ତି ?

ନାୟକ :
(ହଠାତ୍
ଗମ୍ଭୀର
ହୋଇଉଠି)
ହଁ,
ମୁଁ ପ୍ରେମ କରିଛି !
ଖୁବ୍ ଭଲ ପାଇଛି ।
ଉପନାୟକ : କିନ୍ତୁ
ତୁମେ ଯାହା କରିଚ
ସେଇଟା ଯେ
ନିଶ୍ଚିତ ଭାବେ ପ୍ରେମ,
ତା' କେମିତି କହି ହେବ ?
ପୁରୁଷ ଓ ସ୍ତ୍ରୀର
ପାରସ୍ପରିକ ସମ୍ପର୍କକୁ ଯେ
ପ୍ରେମ କୁହାଯିବ,
ଯା'ର ବି ତ କିଛି ମାନେ ନାହିଁ ।
ନାୟକ : ମୁଁ ପରିଭାଷା
ବା definition
କିଛି
ବୁଝେନା ।
ବୋଧେ
ପ୍ରେମର କୌଣସି ନିର୍ଦ୍ଦିଷ୍ଟ definition
ନାହିଁ ।
କେଦାର ଗୌରୀ ପାଇଁ
ଜୀବନ ଉତ୍ସର୍ଗ
କରିଥିଲା ।
ଅଥଚ
ଅଥେଲୋ ଡେସ୍ଡ଼ିମୋନାକୁ
ହତ୍ୟା କରି ଦେଇଥିଲା ।

ପୁଣି ରାଧା ପ୍ରେମପାଇଁ
ନିଜର ମର୍ଯ୍ୟାଦାକୁ
ଭୁଲି ଯାଇଥିଲେ,
ଅଥଚ
ରାମଚନ୍ଦ୍ର ମର୍ଯ୍ୟାଦା ପାଇଁ
ପ୍ରେମକୁ
ପ୍ରତ୍ୟାଖ୍ୟାନ କରି ଦେଇଥିଲେ !
ଏ ସବୁକୁ ତ
ପ୍ରେମ ବୋଲି କୁହାଯାଏ ।
ତେଣୁ
କୌଣସି definition ଦ୍ୱାରା
ମୁଁ କେବେହେଲେ
ପ୍ରେମକୁ ପ୍ରମାଣିତ କରି ପାରିବିନି ।
ତେବେ
ଏତିକି ଜୋର୍ ଦେଇ କହିପାରେ—
ମୁଁ ଯାହା କରିଛି ।
ତା' ନିଶ୍ଚିତ ଭାବେ ପ୍ରେମ !
**And that's all !**

ଉପନାୟିକ : କ'ଣ ତମେ କରିଚ ?

ନାୟକ :
(ହଠାତ୍ ନୀରବ)

ଉପନାୟିକ : ନୀରବ ରହିଲ ଯେ ?

ନାୟକ : କହୁଚି—
ମୁଁ ଯୋଉ ଝିଅ କଥା କହୁଚି
ଦେଖିବାକୁ
ସେ ସେତେଟା
ମୋଟାସୋଟା ନୁହେଁ
କି ସେତେଟା
ଅସୁନ୍ଦର ବି ନୁହେଁ ।

'ଭଲ ହିଅଛିଏ' ବୋଲି କହିଲେ
ଯାହା ବୁଝାଏ
ସେଇ ଗୁଣରେ
ତା'ର କିଛି ଅଭାବ ଥିଲି ବୋଲି
କହି ହବନି ।

ଉପନାୟକ : ପ୍ରଥମ ପରିଚୟ ?

ନାୟକ : ଯୋଉ ଦିନ
ମୁଁ ତା'କୁ ପ୍ରଥମେ ଦେଖିଥିଲି,
ସେ ଦିନ···
ସେଇ ଶୀତ ସକାଳର
ନରମ ଖରାରେ
ମୁଁ ହୁଏତ
ସୂର୍ଯ୍ୟ-ସ୍ତୁତି କରୁଥିଲି ।
ଏବଂ ସେ
ତା' ଅଗଣାରେ ଫୁଟିଥିବା
ମଲ୍ଲି ଫୁଲଗୁଡ଼ିକୁ
ଅତି ସନ୍ତର୍ପଣରେ
ତୋଳୁଥିଲା ।
ମୁଁ ତା' ପଡ଼ିଶା ଘରେ ରହୁଥିଲି ।
ତା' ଭାଇ ସହ
କଲେଜରେ ମୋର
ବନ୍ଧୁତା ହେଲା ।
ବନ୍ଧୁର ସୁନ୍ଦର
ଆଉ
ସ୍ନେହୀ ଭଉଣୀଟିଏ ଥିଲେ,
ସେଠି ଠିକ୍ ଭାବେ
ବନ୍ଧୁତ୍ୱକୁ ବଜାୟ ରଖିବା
ଅନେକ ସମୟରେ
ମୁସ୍କିଲ ହୋଇ ପଡ଼େ ।

ଉପନାୟକ : Right calculation !

ନାୟକ : ଦୁନିଆଁରେ
ମୁଁ ଏକା…
ଖୁବ୍ ଏକା !
ଆଉ ସେଇଥିପାଇଁ ବୋଧେ
ତାଙ୍କ ଘରକୁ ଯିବାର
ଅଳ୍ପ କେତୋଟି
ଦିନ ମଧ୍ୟରେ
ମୁଁ ତାଙ୍କ ମା'ଙ୍କ ମମତା
ଆଉ ବାପାଙ୍କ ସ୍ନେହର
ଅଧିକାରୀ ହୋଇ
ପାରିଲି ।
ଉପନାୟକ : ତା' ପରେ…?
ନାୟକ : ତା' ପରେ…
ତା' ପରେ ହଠାତ୍ ସେ ଦିନ
ଏକ ଅତର୍କିତ
ମୁହୂର୍ତ୍ତରେ
ଏକ ଦାରୁଣ ସମ୍ବାଦ ମୁଁ ପାଇଲି
ମୋ ବନ୍ଧୁର ଆକସ୍ମିକ ମୃତ୍ୟୁ !
ଉପନାୟକ : ଆକସ୍ମିକ ମୃତ୍ୟୁ ?
ନାୟକ : ବନ୍ଧୁର ଶବଟାକୁ ନେଇ
ଶ୍ରେଷ୍ଠ ଏକ ଶବବାହକ ଦଳ
ଶ୍ମଶାନକୁ ଚାଲିଗଲା ପରେ
ମୁଁ ତା' ଭଉଣୀ ପାଖକୁ ଗଲି ।
ପରିବାର,
ଜ୍ଞାତି-କୁଟୁମ୍ବ,
ବନ୍ଧୁ-ବାନ୍ଧବ
ସମସ୍ତଙ୍କ ଗହଣରେ
ସେ ବି କାନ୍ଦୁଥିଲା ।
ମୁଁ ତା'ର ଲୁହ ପୋଛି ଦେଲି ।

ସେ ମନା କରିବା ସତ୍ତ୍ୱେ ବି
ସାନ୍ତ୍ୱନା ଦେବା ପାଇଁ
ଜୋର୍ କରି ତା'କୁ ମୋ ଘରକୁ
ନେଇ ଆସିଲି ।

ଉପନାୟକ : ଓଃ··· !

ନାୟକ : ଶ୍ମଶାନରେ
ଶବଟାକୁ ସେମାନେ କାଠର
ବିଛଣାରେ
ଶୁଆଇ ଦେଲେ,
ଏଠି
ମୁଁ ତା'କୁ ମୋ ଖଟରେ
ଆରାମରେ
ଶୁଆଇ ଦେଲି ।
ସେଠି
ଶୀଘ୍ର ଶେଷ ହୋଇଯିବା ପାଇଁ
ଶବଟା ଦେହରେ
ଘିଅ ଢାଳି ଦିଆଗଲା ।
ଏଠି
ତା' ଦେହସାରା
ମୁଁ ମୋର
ହାତ ବୁଲେଇ ଆଣିଲି ।
ସେଠି
ଶବଟା ମୁହଁରେ
ନିଆଁ
ଦିଆଗଲା ।
ଏଠି
ମୁଁ ପ୍ରଥମ ଥର ପାଇଁ
ତା' ଓଠରେ
ଚୁମ୍ବନ ଦେଲି ।

ନିଆଁରେ ହୁଏତ
ଶବଟାର
ଆଖି ଫୁଟିଗଲା ।
ଏଠି
ସେ ତା'ର ଆଖି
ବନ୍ଦ କରି ଆଣିଲା ।
ଶବଟାର ଦେହସାରା
ନିଆଁ ମାଡ଼ିଗଲା ।
ମୁଁ ତା'କୁ ସମ୍ପୂର୍ଣ୍ଣ ରୂପେ
ବିବସ୍ତ୍ର
କରିଦେଲି ।
ନିଆଁର ଲେଲିହାନ ଶିଖା ମଧ୍ୟରେ
ଶବଟା ଅଦୃଶ୍ୟ ହୋଇଗଲା ।
ମୁଁ ମୋ ଦେହରେ
ତା' ଦେହଟାକୁ
ସମ୍ପୂର୍ଣ୍ଣ ରୂପେ
ଘୋଡ଼ାଇ ପକେଇଲି !!

(ଦୀର୍ଘଶ୍ୱାସ ପରେ
ଦୀର୍ଘଶ୍ୱାସ)

ଶେଷ...
ସବୁ ଶେଷ !
ଶବ-ଦାହ ସରି ଯାଇଛି !
ଆଜି
ଦେହର ଦାହ ବି... !!!

[ମଞ୍ଚ ଅନ୍ଧକାର]

# ତୃତୀୟ : ଅତୀତ

[ ପର ମୁହୂର୍ତ୍ତରେ
ଦ୍ୱିତୀୟ ଜୋନ୍
ଆଲୋକିତ
ହୋଇଛି ।
ଭିନ୍ନ ଏକ
ପରିବେଶ ।
ହୁଏତ
ଅନେକ ବେଳୁ
ନାୟିକା ବସି
କାନ୍ଦୁଛି ।
ପାର୍ଶ୍ୱରେ ନାୟକ
ଛିଡ଼ା ହୋଇ
ପ୍ରବୋଧନା
ଜଣାଇବା ପାଇଁ
ଉପକ୍ରମ କରୁଛି ।।
ଇତି ମଧ୍ୟରେ
ସାଇକ୍ଲୋରାମାରେ
ସବୁଜ ଆଲୋକ
ସବୁଜିମା
ସୃଷ୍ଟି କରିଛି ।
କମ୍ପୋଜିସନ୍‌ରେ ମଧ୍ୟ
ପରିବର୍ତ୍ତନ ଘଟି
ସିଲହଟ୍‌ରେ ଥିବା
ଚରିତ୍ରଗୁଡ଼ିକ
କୌଣସି ଏକ
ଏକାନ୍ତ କୋଠରିର
ଆଭାସ ଦେଇଛନ୍ତି ।।]

ନାୟକ . ଏ··· !
କାନ୍ଦି କାନ୍ଦି ତମ ଆଖି ଲ'ଟା
ଯାହା କଷ୍ଟ
ପାଇବାର କଥା ତ
ପାଇଲଣି,
ତା' ବୋଲି
ମୋ ମନଟାକୁ ବି
କାହିଁକି
ଏତେ କଷ୍ଟ ଦଉଚ ?
ନାୟିକା :
(ନୀରବ)
ନାୟକ : ମୁଁ ତମକୁ ଜୋର୍ କରି
ତମ ଘରୁ
ଏଠିକି
ନେଇ ଆସିଲି ବୋଲି
ଖରାପ ଲାଗିଲାନି ତ ?
ଦେଖ,
ଘରେ ସେଠି ସମସ୍ତେ କାନ୍ଦୁଚନ୍ତି ।
ମୁଁ ମାନୁଚି
ଏ ଭଳି ଘଟଣାରେ
ସେମାନଙ୍କର patience ନ ରହିବାଟା
ସ୍ୱାଭାବିକ ।
ତା' ବୋଲି
ତମେ ଘରର ବଡ଼ ଝିଅ ହୋଇ,
ଜାଣିବା ଶୁଣିବା ହୋଇ···
Please,
ଆଉ କାନ୍ଦନା ।
ଯାହା ଯେତେବେଳେ ଘଟିବାର କଥା···
ନାୟିକା : କେତେ ଆଶା ମୁଁ କରି ନ ଥିଲି···?

ନାୟକ : ମତେ ବିଶ୍ୱାସ କର ,
ତମକୁ ଦେଖିଲା ପରଠୁ
ମୁଁ ବି ତ
ଅନେକ ସ୍ୱପ୍ନ ଦେଖିବାରେ
ଲାଗିଥିଲି ।
ଯେତେ ସବୁ
ଅଜବ ଧରଣର ସ୍ୱପ୍ନ—
କେତେବେଳେ ତମକୁ ନେଇ
ଘର-ସଂସାର ଗଢ଼ିବାର ସ୍ୱପ୍ନ !
କେତେବେଳେ ଅବା ଏକା ଏକା
ଲକ୍ଷ୍ୟହୀନ ଧୂମକେତୁ ଭଳି
ଘୂରି ବୁଲିବାର ସ୍ୱପ୍ନ !
ହଠାତ୍ ପୁଣି ମୁଁ ନିଜକୁ
ଆବିଷ୍କାର କରି ବସିଲି
ବିଭିନ୍ନ ରୂପରେ—
ଉଦ୍ଦାମ,
courageous…
ଦୁର୍ଦ୍ଦାନ୍ତ,
greedy…
ନିଷ୍କପଟ,
poor !

(ହସିଛି )

ନାୟିକା :

(ଛୁଙା ହୋଇ)

ଏ ତମେ କ'ଣ କହୁଚ ?

ନାୟକ : ଅଥଚ ଦୁହେଁ ମିଶି
ଆମେ ଶପଥ କରିଥିଲେ—
ଆମେ ବିବାହ କରିବା !

ନାୟିକା : ଘର-ସଂସାର ଗଢ଼ିବା !

ନାୟକ : ଦୁନିଆଁ ସହ ଲଢ଼ିବା !
ନାୟିକା : ଏମ୍. ଏ. ପର୍ଯ୍ୟନ୍ତ ପଢ଼ିବା !
ନାୟକ : ପିଏଚ୍. ଡ଼ି. କରିବା !
ନାୟିକା : ଅନ୍ୟମାନଙ୍କ ଆଗରେ
କିଛି ଗୋଟାଏ
ନଜିର୍ ଥୋଇବା !
ନାୟକ : ଆଗକୁ···
ଖୁବ୍ ଆଗକୁ ଆଗେଇଯିବା !
ନାୟିକା : ନିରୁଦ୍ଦିଷ୍ଟ ହେବା !
ନାୟକ : ଅନାମ ସାଜିବା !
ଅଜଣା କୋଉ ଗୋଟାଏ ଠାଁର
ଜନ-ଅରଣ୍ୟ ଭିତରେ
ନିଜକୁ ହଜେଇ ଦେବା !
ନାୟିକା : ଏମିତି ଅନେକ···
ଅନେକ କଳ୍ପନା !
ନାୟକ : ସୀମା···
ସରହଦ୍···
କିଛି ବୋଲି କିଛି ମାନିବାନି !
( ଦୁହେଁ
ପାଦରେ
ପାଦ ମିଳେଇ
ଆଗେଇ
ଯାଇଛନ୍ତି)
ନାୟିକା : କିନ୍ତୁ ଆଜି ?
ଆଜିର ଆଖିରେ ସେ ସବୁ
କେବଳ ଗୁଡ଼ାଏ ସମ୍ପର୍କହୀନ···
ଅର୍ଥଶୂନ୍ୟ କଳ୍ପନା !
ସ୍ୱପ୍ନ ଛଡ଼ା ଅନ୍ୟ କିଛି ନୁହେଁ !
ନାୟକ : ତମେ କିନ୍ତୁ ଏତେଟା
ନିରାଶବାଦୀ ହେଲେ ଚଳିବନି !

ନାୟିକା : ଆଶା···
ନୖରାଶା !
ମଣିଷ ଯାହା ଆଶା କରେ,
ସେଇଠା କେବେ ସେ ପାଏନା ।
ଏବଂ
ଯାହା ସେ ପାଏ,
ସେଇଠା କେବେ ସେ
ଆଶା କରି ନ ଥାଏ ।
ନାୟକ : ତଥାପି
ଆମକୁ ବଞ୍ଚିବାକୁ ହେବ ।
ଯା'କୁ ନେଇ,
ଯା'ର ଭିତରେ ।

ନାୟିକା : ଆଜ ଘାଇ
ମୁହୂର୍ତ୍ତକ ମଧ୍ୟରେ
ଆମର ଏତେ ଦିନର
ସବୁ ଅନୁଭବ,
attachment,
emotion,
sentiment,
ଭଲ ପାଇବା—
ସବୁକିଛିକୁ
ମିଛ ବୋଲି ପ୍ରମାଣ
କରି ଦେଇ
ସବୁ ଦିନ ପାଇଁ
ଚାଲିଗଲା ।

ନାୟକ : ମୁଁ ମାନୁଛି,
ସବୁ ମିଛ ।
ଏ ପୃଥିବୀଟା ହିଁ ମିଛ ।

ନାୟିକା : ଏ ପୃଥିବୀରେ କେବଳ
ଏକମାତ୍ର ସତ୍ୟ ହେଉଛି
ରାମ ନାମ ସତ୍ୟ ହେ ।

ନାୟକ : ନା !
ଏଇ ରାମ ନାମ ସତ୍ୟ ହେ ବି ମିଛ ।

ନାୟିକା : ଭାଇର ଏଇ ଆକସ୍ମିକ ମୃତ୍ୟୁରେ
ଆମ ଘରେ
ସମସ୍ତେ ଖୁବ୍ ଭାଙ୍ଗି ପଡ଼ିଚନ୍ତି ।

ନାୟକ : ମୁଁ ଜାଣିବାରେ
ଦେହଟା ହିଁ କେବଳ ସତ୍ୟ !

ନାୟିକା : ଜୀବନଟା ତା'ର ବୃଥା ହେଇଗଲା ।

ନାୟକ : ଦେହର ସ୍ଥିତି ବିନା
ପୃଥିବୀର କିଛି ମାନେ ହୁଏନା !

ନାୟିକା : ପୃଥିବୀର ଅନେକ ଅନୁଭବ···
ଅନେକ ଉପଲବ୍ଧି ତା' ପାଇଁ
ବାକି ରହିଗଲା ।

ନାୟକ : ଦେହର ଦାହଟା ହିଁ
ଜୀବନର ସବୁଠୁ ବଡ଼ ଉପଲବ୍ଧି !

ନାୟିକା : ତା' ଉପରେ ଆମ ପରିବାରଟା
ସମ୍ପୂର୍ଣ୍ଣ ନିର୍ଭର କରୁଥିଲା ।

ନାୟକ : କିନ୍ତୁ···
ଚରିତ୍ର,
ନ୍ୟାୟ,
ପୁଣ୍ୟ,
ଧର୍ମ
ଇତ୍ୟାଦି ଶବ୍ଦଗୁଡ଼ାକ ଉପରେ
ମୃତ୍ୟୁ କେବେହେଲେ ନିର୍ଭର
କରେନା ।

ନାୟିକା : ଏଇ ପରିସ୍ଥିତରେ
ମୋର କିଛି ଗୋଟାଏ
କରିବା ଦରକାର ।
ନାୟକ : ବରଂ
ଜୀବନକୁ ଉପଭୋଗ କରି
ଅଭିଳାଷରେ ପୂର୍ଣ୍ଣତା ଆଣି
ମୃତ୍ୟୁ ପାଇଁ
ପ୍ରସ୍ତୁତ ହେବା ଉଚିତ୍ !
ନାୟିକା : ତୁମେ ମତେ
ନିର୍ଭର ପ୍ରତିଶ୍ରୁତି
ଦେଇ ପାରିବ ?
ନାୟକ : ହୁଁହେଁ
ହାତରେ ହାତ ମିଳେଇ
ଯେତେବେଳେ ଏତେ ବାଟ
ଆଗେଇ ଆସିଛେଁ,
ହୁଁହେଁ
କାନ୍ଧରେ କାନ୍ଧ ମିଳେଇ
କ'ଣ ବାକିତକ ବାଟ
ଆଗେଇ ଯାଇପାରିବାନି ?
ମୁଁ ସତ କହୁଛି,
ଏଇଟା ଆଦୌ ମୋର
ଭାବପ୍ରବଣତା ନୁହେଁ ··
ଆମ ଭଲ ପାଇବାର
ପ୍ରଥମ ପ୍ରତିଶ୍ରୁତି ବି ନୁହେଁ ।
ବରଂ
ଏଇଟା ହେଉଛି
ଗୋଟାଏ ଶବର
ଶେଷ ନିଃଶ୍ୱାସର
ଅନ୍ତିମ ଅନୁରୋଧ !

ନାୟିକା : ଓଃ······!
ମତେ କିନ୍ତୁ ଭୟ ଲାଗୁଚି ।
ମୋ ଦେହ
ଶୀତେଇ ଉଠୁଚି ।

(ସାମାନ୍ୟ ରହି)

ଶ୍ମଶାନକୁ ନେଇ
ସେମାନେ ବୋଧେ
ଘରର ଶବଟାକୁ
କାଠର ବିଛଣାରେ
ଶୁଆଇ ଦେଉଚନ୍ତି ।

ନାୟକ : ତମେ ବରଂ
ମୋ ଖଟରେ ଟିକେ
ଆରାମରେ ଶୋଇପଡ଼ ।

ନାୟିକା : ଶୀଘ୍ର ଶେଷ ହୋଇଯିବ ବୋଲି
ଶବଟା ଦେହରେ
ଘିଅ ଢଳା ହେଉଚି ।

ନାୟକ : ଆଃ···
ତମ ଦେହରେ କେତେ ବାସ୍ନା !

ନାୟିକା : ଏଇ ତ···
ଶବ ମୁହଁରେ
ନିଆଁ ଦିଆ ହେଉଚି ।

ନାୟକ : ଆଃ···!

ନାୟିକା : ନିଆଁରେ
ହୁଏତ
ଶବଟାର
ଆଖି ଫୁଟି ଗଲା ।

ନାୟକ : ତମ ଆଖିରେ କିନ୍ତୁ
ଅନେକ ସ୍ୱପ୍ନ !

ନାୟିକା : ଦେଖୁଛ,
ଶବଟାର
ଦେହ ସାରା
ନିଆଁ ମାଡ଼ି ଯାଉଛି ।

ନାୟକ : ଅଥଚ
ତମ ଦେହର
**topography**
ଖୁବ୍ ବିସ୍ମୟକର !

ନାୟିକା : ଆଃ…
ନିଆଁର
ଲେଲିହାନ ଶିଖା ମଧ୍ୟରେ
ଶବଟା
ଅଦୃଶ୍ୟ ହୋଇ ଯାଉଛି ।

ନାୟକ : ମୁଁ ବି
ମୋ ଦେହରେ
ତମର ଦେହକୁ
ସମ୍ପୂର୍ଣ୍ଣ ରୂପେ
ଯୋଡ଼ିଦେଇ ଦେବି !!!

(ଦୁହିଙ୍କର
ଘନ ଘନ
ଘର୍ମାକ୍ତ
ଦୀର୍ଘଶ୍ୱାସ)

[ ଅନ୍ଧକାର ]

# ଚତୁର୍ଥ : ଉତ୍ତର ଅତୀତ

[ ଅବିଲମ୍ବ୍
ତୃତୀୟ ଜୋନ୍‌ରେ
ଆଲୋକ
ପ୍ରବେଶ କରିଛି ।
ପୁନଶ୍ଚ
ଅନ୍ୟ ଏକ
ପରିବେଶ ।
ନାୟକ ଜଣେ
ଅପରାଧୀଙ୍କ ଭଳି
ନୀରବରେ
ଛିଡ଼ା ହୋଇଛି ।
ରାଗ, ଘୃଣା,
ଅବିଶ୍ୱାସ,
ନିରୁପାୟ,
କିଂକର୍ତ୍ତବ୍ୟବିମୂଢ଼
ଇତ୍ୟାଦିରେ
ଦ୍ରବୀଭୂତ ହୋଇ
ନାୟିକାର ପିତା
ପଦଚାଳନା
କରି ଚାଲିଛନ୍ତି ।।

ପରିବେଶରେ
ପରିବର୍ତ୍ତନ ମାଧ୍ୟେ
ସାଇକ୍ଲୋରାମାର
ଆଲୋକ ମଧ୍ୟ

ବୀଇଗିଣୀ ରଙ୍ଗରେ
ପରିବର୍ତ୍ତିତ ହୋଇଛି ।
ତତ୍ ସଙ୍ଗେ ସଙ୍ଗେ
କମ୍ପୋଜିସନ୍
ଏକ ଭିନ୍ନ ଚିତ୍ର
ଅଙ୍କନ କରି
ଅନ୍ୟ ଏକ
କୋଠରୀର
ସୂଚନା ଦେଉଛି ।
ସମାନ୍ତରରେ
ବାମରୁ ରହିଛନ୍ତି-
ଉପନାୟକ,
ଉପନାୟିକାର ପିତା,
ପ୍ରଥମ ଶିଷ୍ୟ,
ନାୟିକା,
ଦ୍ୱିତୀୟ ଶିଷ୍ୟ,
ଗୁରୁଦେବ
ଓ ତୃତୀୟ ପୁରୁଷ ।।]

ନାୟିକାର
ପିତା : ମୁଁ ପଚାରୁଛି···
କେଉଁ ସାହସରେ
ତମେ ଏ ସବୁ କାର୍ଯ୍ୟ
କରି ପାରିଲ ?
ମୋର ଘରକୁ ଆସି
ଶେଷରେ ମୋର ଘର ଭିତରେ···।
କ'ଣ ବୋଲି ତମେ ଭାବିଚ ନିଜକୁ ?
ମୁଁ ତମକୁ ନେଇ
ଥାନାରେ ଦେବି,
ଜେଲ୍ ପଠେଇବି ।
ମୁଁ କେବେହେଲେ ଏ ସବୁ
ବରଦାସ୍ତ୍ କରି ପାରେନା !

ନାୟକ :
(ନୀରବ)
ପିତା : ଚୁପ୍ କାହିଁକି ?
କୁହ—
ନାୟକ : ମୁଁ...।
ମୋ କଥାଟା
ଭଲ ଭାବେ ନ ଶୁଣି...
ପିତା : କ'ଣଟା ତମେ ମତେ ଆଜ
ଶୁଣେଇବାକୁ ଚାହଁ ?
ତମେ ମୋ ଝିଅଟାର
କ'ଣ ଆଉ ବାକି ରଖିଚ ?
ତମେ ଯୋଉ ଅପରାଧ କରିଚ...
ଯୋଉ ପାପ କରିଚ,
ତା'ର ଉପଯୁକ୍ତ ଶାସ୍ତି
ତମକୁ ମିଳିବା ଦରକାର ।
ନାୟକ : କିନ୍ତୁ
ମୁଁ ଜାଣିଶୁଣି କରିନି ..
ମୁଁ...
ମୁଁ ଆପଣଙ୍କ ଝିଅକୁ
ବାହା ହେବାକୁ ପ୍ରସ୍ତୁତ ଅଛି ।
ପିତା : ଖୁବ୍ ଦୟା କରିବ
ମୋ ପ୍ରତି !
ଗୋଟାଏ ନାବାଳିକା ଝିଅର
ସରଳତାର ସୁଯୋଗ ନେଇ
ପ୍ରଥମେ ତା'ର ଇଜ୍ଜତ୍
ବରବାଦ୍ କରିଦେଲ !
ତମର ଦୟାରୁ
ଅବିବାହିତ ଝିଅଟା
ଅନ୍ତଃସତ୍ତ୍ୱା ହୋଇଗଲା !

ଆଜି ଶେଷରେ କହୁଚ—
ତା'କୁ ବାହା ହେବାକୁ
ପ୍ରସ୍ତୁତ ଅଛ ।
ଖୁବ୍ ଦୟା ତମର !

ନାୟକ : ନା,
ମାନେ···
ଆମେ ଦୁହେଁ
ବାହା ହେବୁ ବୋଲି
ଠିକ୍ କରି ସାରିଚୁ ।

ପିତା : ଚୁପ୍ କର ।
କୋଉ ପରିଚୟ ନେଇ
ତମେ ମୋ ସାମ୍ନାରେ
ଏ କଥା କହି ପାରୁଚ ?
କ'ଣ ବା ଅଛି ତମର-
ଘର ଦ୍ୱାର,
ଜମିବାଡ଼ି,
ନା ରୋଜଗାର ?
ଝିଅଟା କ'ଣ ମୋର
ଏଡ଼େ ଶସ୍ତା ପଡ଼ିଚି ?

ନାୟକ : ଆପଣ ବରଂ
ମତେ ବୁଝିବାରେ
ଭୁଲ୍ କରୁଚନ୍ତି ।

ପିତା : ମୁଁ କଳ୍ପନାରେ ସୁଦ୍ଧା
ଭାବି ନ ଥିଲି—
ଶେଷରେ ତମେ ଏତେ ତଳକୁ
ଖସି ଯାଇ ପାରିବ···
ମୋ ବିଶ୍ୱାସରେ ବାଧ ଦେବ !
କେତେ ବିଶ୍ୱାସ
ମୁଁ ତମକୁ କରି ନ ଥିଲି ?

ମୁଁ ତମକୁ
ନିଜ ପୁଅ ଭଳି
ସ୍ନେହ ଦେଇଛି ।
ମୋ ସ୍ତ୍ରୀ ବି ତ
ତମକୁ ଆଦର କରିଛି ।
ନାୟକ : ହଁ,
ଗୋଟାଏ ନିଃସହାୟ ଅନାଥର
ପରିଚୟ ନେଇ
ମୁଁ ଘୂରି ବୁଲୁଥିଲି ।
ଟୋପାଏ ସ୍ନେହ ପାଇଁ···
ଟିକିଏ ମମତା ପାଇଁ
ମୁଁ ବ୍ୟାକୁଳ ହୋଇ ଉଠୁଥିଲି ।
ହେଲେ ଏ ଘରେ
ମୁଁ ସ୍ନେହ ପାଇଛି,
ଆଦର ପାଇଛି;
ମମତା ପାଇଛି,
ସମ୍ମାନ ପାଇଛି !
ମୁଁ କେବେହେଲେ ଏଇଠାକୁ
ଅସ୍ୱୀକାର କରି ପାରିବିନି ।
ପିତା : ଘରେ ଆମେ
ନଅ ପ୍ରାଣୀ କୁଟୁମ୍ବ !
ଘର ବୋଇଲେ
ସମସ୍ତଙ୍କ ମୁଣ୍ଡ ଗୁଞ୍ଜିବା ପାଇଁ ବି
ଯଥେଷ୍ଟ ନୁହେଁ ।
ପାକଲ ପତର ମୁଁ !
ରୋଜଗାର କରି
ପିଲି କୁଟୁମ୍ବ ମୁହଁରେ
ଦି'ଟା ଦାନା ଦେବା ପାଇଁ ବି
ମୋର ଶକ୍ତି ନାହିଁ !

ସ୍ତ୍ରୀ ମୋର
ବଛଣା ଧରିବା ଦିନଠୁଁ
ପିଲଙ୍କ ମୁଣ୍ଡରେ
ଚଢ଼କ ପଡ଼ିଚ !
ଦୁଃଖେ କଷ୍ଟେ
ଶାଗ ପଖାଳ କରି
ଚଳିଯିବା କଥା ।
ଯୋଉ ପୁଅ
ରୋଜଗାର କରୁଥିଲା,
ଯାହା ଉପରେ
ଭରସା ଥିଲା—
ସେଇ ପଥରକୁ ଆଶ୍ରା କରି
ସମସ୍ତେ ପାରି
ହୋଇଯିବୁ ବୋଲି
ଭାବିଲି ବେଳକୁ
ଦଇବ ସମ୍ବଲ ନାଇଁ ସେ
ତା'କୁ ବି ବୁଡ଼ାଇ ଦେଲା ।
ଆଉ ଶେଷରେ
ଝିଅ ମୋର ପଣ କରିଥିଲା—
ଏକେଲା ରୋଜଗାର୍ କରି
ସଭିଁଙ୍କୁ ପୋଷିବ ।
ହେଲେ ସେତକ ବି ଆଜି···
ନାୟକ : For God sake···
ଅନ୍ତତଃ
ଶେଷ ଥର ପାଇଁ
ମତେ ବିଶ୍ୱାସ
କରନ୍ତୁ—
ମୁଁ କୌଣସି ଶଠ ନୁହେଁ,
ପ୍ରତାରକ ନୁହେଁ ।

ମୁଁ ସ୍ୱୀକାର କରୁଛି,
ମୁଁ ଯାହା କରିଛି
ସେଇଟା ହୁଏତ ଭୁଲ୍,
ଗୋଟାଏ ସାଙ୍ଘାତିକ ଭୁଲ୍ !
କିନ୍ତୁ ତା' ବୋଲି
ଗୋଟାଏ ଭୁଲ୍‌ର
ସଂଶୋଧନ କରିବାକୁ ଯାଇ
ଆଉ ଗୋଟାଏ
ଭୁଲ୍ କରିବାକୁ
ଆପଣ କାହିଁକି
ମତେ ବାଧ କରୁଚନ୍ତି ।

ପିତା : ଓଃ !
ଏ ସବୁ ଚିନ୍ତା କଲାବେଳକୁ
ମୋ ମୁଣ୍ଡ ଭିତରେ
ସବୁ ଯେମିତି
ଗୋଳମାଳ ହୋଇ ଯାଉଚି ।

ନାୟକ : ଆମେ ଦୁହେଁ
ପରସ୍ପରକୁ ଭଲ ପାଉ…
ଖୁବ୍ ଭଲ ପାଉ ।
ଜଣେ ଅନ୍ୟ ଜଣଙ୍କୁ ଛାଡ଼ି
ଆମେ କେବେହେଲେ
ବଞ୍ଚି ପାରିବୁନି ।
ମୁଁ କଥା ଦେଉଚି,
ତା'ସହ
ମୁଁ ବି ଏ ଘରର…
ଏ ପରିବାରର ଦାୟିତ୍ୱ ତୁଲାଇବି ।
ମୁଁ ବି ଆପଣଙ୍କ ଭିତରୁ
ଜଣେ ହେବାକୁ ଚାହେଁ ।
ଆପଣ ମତେ ନିଜର କରି ନିଅନ୍ତୁ…

ଖୁବ୍ ଆପଣାର କରି ନଅନ୍ତୁ ।
ମତେ ନିରାଶ କରନ୍ତୁନି ।

ପିତା : ମୁଁ ମାନୁଚି,
ତମେ ଦୁହେଁ ଜଣେ ଅନ୍ୟ ଜଣଙ୍କୁ
ଭଲ ପାଉଚ,
ଦୁହେଁ ମିଶି ହସ ଖୁସିରେ
ଘର-ସଂସାର ଗଢ଼ିବାକୁ ଚାହୁଁଚ ।
ବେଶ୍ ଭଲ କଥା ।
ମୁଁ ବି ଖୁସି···ଖୁବ୍ ଖୁସି ।
ସତ କହିବାକୁ ଗଲେ
ତମ ଦୁହିଁଙ୍କ
ବାହାଘରକୁ ମୁଁ ଆଦୌ
ବିରୋଧ କରୁନି ।
ଝିଅ ମୋର ରାଜି ଖୁସିରେ ବାହା ହବ ।
କୌଣସି ଚିନ୍ତା ନାହିଁ,
କୌଣସି ଦାବି ନାହିଁ,
କୋଉଁ ବୋଲି କହୁ ନାହିଁ ।
ଏଥିରେ କୋଉ ବାପ ଅବା
ଖୁସି ନ ହେବ ?

ନାୟକ : ଆପଣ···

ପିତା : ହେଲେ ଠିକ୍ ଯେମିତି
ଜଣେ ବାପର ପରିବାର ପ୍ରତି
ଅନେକ ଦାୟିତ୍ୱ ଥାଏ,
ଅନେକ କର୍ତ୍ତବ୍ୟ ରହିଥାଏ;
ଜଣେ ପୁଅର ବି
ସେମିତି କିଛିଟା ଥାଏ ।
ତେଣୁ
ତମର ବି କିଛିଟା କର୍ତ୍ତବ୍ୟ
ରହିଚି ।

ନାୟକ : ମୋର କର୍ତ୍ତବ୍ୟ ?

ପିତା : ତମର ଏଇ
inter-cast ବାହାଘର ଫଳରେ
ଶ୍ରେଷ୍ଠ ଏଇ ସହରଟିରେ
ଘର କରି ରହିବାଟା
ଆମ ପକ୍ଷେ ଧୀରେ ଧୀରେ
ଅସମ୍ଭବ ହୋଇପଡ଼ିବ ।
ଦାଣ୍ଡ ଲୋକେ
ଆମ ଆଡ଼କୁ ଆଙ୍ଗୁଠି ଦେଖେଇ
ବାର କଥା କହିବେ ।
ପିଲାଗୁଡ଼ାକଙ୍କର ସ୍କୁଲ ଯିବା
ବନ୍ଦ ହୋଇଯିବ ।
ଝିଅଗୁଡ଼ାକ ଆଉ
ବାହା ହୋଇ ପାରିବେନି ।

ନାୟକ : ନା··· !!

ପିତା : ମୁଁ ଗୋଟାଏ ବାପ !
ଆମ ସମସ୍ତଙ୍କ କବର ଉପରେ
ତମ ଦୁହିଁଙ୍କ
ସୁଖ-ସଂସାରର ସ୍ୱପ୍ନ-ମହଲ
ଗଢ଼ି ଉଠୁ,
ଏଇଟାକୁ ମୁଁ କେବେହେଲେ
ସମର୍ଥନ କରି ପାରେନା···
ସ୍ୱୀକୃତି ଜଣେଇ ପାରେନା !!

ନାୟକ : ନା···ନା···ନା !!!

[ଅନ୍ଧକାର]

# ପଞ୍ଚମ : ପୁନଶ୍ଚ ବର୍ତ୍ତମାନ

[ହଠାତ୍
ଚତୁର୍ଥ କୋନ୍
ଆଲୋକିତ ହୋଇଛି ।
ପୂର୍ବ ପରିଚିତ
ସାଧାରଣ ସ୍ଥାନର
ପରିବେଶ ।
ଉପସ୍ଥିତ
ଆବେଗସିକ୍ତ
ନାୟିକା
ଏବଂ
ଦୀର୍ଘ ସମୟ ଧରି
ନୀରବରେ
ନାୟିକାର
ଉପାଖ୍ୟାନ
ଶୁଣି ଚାଲିଥିବା
ଉପନାୟକ ।
ଦୂରରେ
ତ୍ରି-ଭଙ୍ଗୀ ଅବସ୍ଥାରେ
ଛିଡ଼ା ହୋଇ
ରହିଛନ୍ତି
ନିଷ୍ଫଳ ତୃତୀୟ ପୁରୁଷ ॥

କ୍ଲାଇମାକ୍ସ
ନୀଳ ଆଲୋକରେ
ଆଲୋକିତ ।

କମ୍ପୋଜିସନ୍ ମଧ୍ୟ
ପୂର୍ବ ସୂଚିତ
ସାଧାରଣ ସ୍ଥାନର
ପ୍ରତୀକ ସୃଷ୍ଟି କରୁଛି ।
କ୍ରମାନୁସାରେ
ବାମରୁ ପୂର୍ବଭଳି
ଅବଶିଷ୍ଟ ଚରିତ୍ର
ସ୍ୱ ସ୍ୱ ସ୍ଥିତିରେ
ରହିଛନ୍ତି ।
କେବଳ
ନାୟିକାର ପିତା
ନାୟିକାର
ପଶ୍ଚାତ୍‌ରେ
ଛିଡ଼ା ହୋଇ
ଏକ ସଙ୍କେତଧର୍ମୀ
ବନ୍ଦୀତ୍ୱର
ପ୍ରମାଣ ଦେଉଛନ୍ତି ॥ ]

ନାୟକ :
(ପ୍ରାୟତଃ
ଚିତ୍କାର
କରି ଉଠି)
ନା !
ମୁଁ ବି କେବେହେଲେ
କାହାରି କବର ଉପରେ
ନିଜ ଭବିଷ୍ୟତର ମହଲ
ଗଢ଼ିବାକୁ ଚାହେଁନା !!

ଉପନାୟକ : କ'ଣ ହେଲା··· ?
ତମେ ହଠାତ୍ ଏମିତି
ଉତ୍ତେଜିତ ହୋଇ ପଡ଼ିଲ ଯେ··· ?

ନାୟକ : ଏଁ···?
ଓଃ··· !

[କ୍ରମଶଃ
ପଞ୍ଚମ ଜୋନ୍
ଆଲୋକିତ ହୋଇଛି ।
ନାୟକ
ଧୀରେ ଧୀରେ
ସେହି ଦିଗକୁ
ଗତି କରୁଛି । ]

ନାୟକ : ମୋ ରକ୍ତରେ ରକ୍ତରେ ବୋଧେ
ଝଡ଼ ସୃଷ୍ଟି ହେଉ ଚାଲିଥିଲା ।
ସେ ଝଡ଼...
ଶେଷ ହୋଇ ଯାଇଛି ।
ଗୋଟାଏ ଗଭୀର କ୍ଷତ ନେଇ
ମୁଁ ଚାଲି ଆସିଥିଲି—
ଏଠିକି...
ଅନେକ ଦୂରକୁ...
ଅନେକ ଦିଗନ୍ତର ବ୍ୟବଧାନ ଡେଇଁ !

(ବସିଛି)
ଉପନାୟକ :
(ନାୟକ
ନିକଟକୁ ଆସି)
ମୁଁ ଭାବୁଚି,
ତମର କିଛିଟା ବିଶ୍ରାମ ଦରକାର !
Now let's relex !

ନାୟକ :
(ଦୀର୍ଘଶ୍ୱାସ)
Yes, relex !

[ଇତି ମଧ୍ୟରେ
ଚତୁର୍ଥ ଜୋନ୍‌ରୁ
ଆଲୋକ
ଅପସରି ଯାଇଛି ॥

ଅଲ୍ଭ କେତୋଟି
ମୁହୂର୍ତ୍ତିଙ୍କୁ
ଅତିକ୍ରମ
କରିବା ପାଇଁ
ହଠାତ୍
ନାୟକ
ଓ
ଉପନାୟକ
ଚଞ୍ଚଳ
ହୋଇ ପଡ଼ନ୍ତି ॥ ]

ତୃତୀୟ ପୁରୁଷ :
(ନିଶାଗ୍ରସ୍ତ ଭଙ୍ଗୀରେ
ହସି ହସି
ପ୍ରବେଶି)
ଆଶ୍ଚର୍ଯ୍ୟ !
ବର୍ତ୍ତମାନ ବ ଦୁହେଁ ଚୁପ୍‌ଚାପ୍ !

ଦୁହେଁ :
(ସଚିନ୍ତ
ହୋଇ ଉଠି)
ନା···!!

ତୃତୀୟ ପୁରୁଷ : ତା'ହେଲେ···?
ଓଃ···!
ବୁଝିଲି ।
ବୋଧେ relaxର ଯୋଜନା ?

ଦୁହେଁ : ହଁ ॥

ତୃତୀୟ ପୁରୁଷ :
(ହସିଉଠି)
ବେଶ୍ ତ···।
Yes friends, relax !
But relax with drink !

ବୁଢ଼ୀ : Drink ?

ତୃତୀୟ ପୁରୁଷ : ଆପଣ କହନ୍ତୁ—
Don't drink !
ଏବଂ ମୁଁ କହେ—
Alone !
ଅର୍ଥାତ୍
Don't drink alone !

ବୁଢ଼ୀ :
(ହସିଉଠି)
ଚମତ୍କାର !

ତୃତୀୟ ପୁରୁଷ : ହସନ୍ତୁ···
ଖୁବ୍ ହସନ୍ତୁ···
ଠିକ୍ ଏମିତି ମନଖୋଲି ହସନ୍ତୁ !
ଜୀବନରେ ହସିବାକୁ
ମଣିଷକୁ ଖୁବ୍ କମ୍ ସମୟ ମିଳେ !
ତେଣୁ···
ସମୟକୁ ନଷ୍ଟ ହେବାକୁ ଦିଅନ୍ତୁନି !

(ହସି ଉଠିଛନ୍ତି)

ବୁଢ଼ୀ :
(ହସି ହସି)
ତା' ପରେ··· ?

ତୃତୀୟ ପୁରୁଷ : Cheers ·· !
(ହସି ଚାଲିଛନ୍ତି)

ବୁଢ଼ୀ : ଏବଂ ତା' ପରେ··· ?

ତୃତୀୟ ପୁରୁଷ : ହଠାତ୍ hang over !
Baby elephant walk !
Like this....

(ହାତୀ ଚାଲିବାର
ଭଙ୍ଗୀ କରିଛନ୍ତି)

ଦୁହେଁ :
(ହସି ହସି)
ବେଶ୍ ତ... !
କିନ୍ତୁ ମହାଶୟ,
ତା' ପରେ କ'ଣ ହେବ
ଆପଣ ଚିନ୍ତା କରିଚନ୍ତି ?

ବୃଦ୍ଧ ପୁରୁଷ : ଥରେ ଜୀବନକୁ
ଉପଭୋଗ କରି ଶିଖିଲେ
ଚିନ୍ତା,
ଦୁଃଖ,
ବିରକ୍ତି,
ଯନ୍ତ୍ରଣା—
ଏ ସବୁ କିଛି
ଅନୁଭବ କରି ହୁଏନି ।

ଦୁହେଁ : ଆପଣଙ୍କ ଧାରଣାଟା ଭୁଲ୍ ।

ନାୟକ : କାରଣ,
ମୁଁ ବୁଝିଚି—
ଜୀବନଟା ଠିକ୍ ଜୀବନ ନୁହେଁ ।
ଏବଂ
ଉପଭୋଗଟା ବି
ଅନେକ ସମୟରେ
କେବଳ ଗୋଟାଏ ଉପହାସ,
ଉପଭୋଗ ନୁହେଁ ।
ତେଣୁ
ଆପଣଙ୍କ ଧାରଣାଟା
ନିହାତି ଭୁଲ୍ ।

ବୃଦ୍ଧ ପୁରୁଷ : Young friend !
ଧାରଣା କେବେହେଲେ
ଭୁଲ୍ ବା ଠିକ୍ ହୁଏନି ।

ଏଇଟା ଗୋଟାଏ relative term !
ଧାରଣା ହେଉଛି
ପରିଷ୍କାର ପାଣି ଭଳି ।
ଯା'କୁ ନେଇ
ଯୋଉ ପାତ୍ରରେ ରଖିବ,
ସେ' ଠିକ୍ ସେଇ ଆକାର
ଆଉ ରଙ୍ଗ ଧାରଣ କରିନେବ ।

ଦୁହେଁ : ମାନେ···

ତୃଷ୍ଣାପ୍ତ ପୁରୁଷ : ଏଇ ଧର,
ତମେ ଗୋଟାଏ ପାରା ଧରି
ରାସ୍ତାରେ ଯାଉଛ,
ତାକୁ ଦେଖି ଜଣେ ଭାବୁଛି—
ଶାନ୍ତିର ପ୍ରତୀକ ରୂପେ
ଉଡ଼େଇବା ପାଇଁ
ତମେ ପାରାଟିକୁ ନେଇ ଯାଉଛ ।
ହୁଏତ
ଠିକ୍ ସେତିକବେଳେ
ଆଉ ଜଣେ ବି
ଭାବୁଥାଇ ପାରେ—
ପାରାକୁ ମାରି
ତା'ର ମାଂସ ଖାଇବା ପାଇଁ
ତମେ ତା'କୁ ନେଇ ଯାଉଛ ।

ଦୁହେଁ : ଠିକ୍ ତ··· !

ତୃଷ୍ଣାପ୍ତ ପୁରୁଷ : ଜୀବନଟା ବି ଠିକ୍ ସେଇଭଳି···
ଗୋଟାଏ relative term !
ତେବେ ··
ମୁଁ କନ୍ତୁ ଆଉ
disturb
କରିବାକୁ ଚାହେଁନା ।

ମୁଁ ଆସୁଛି,
ପୁଣି ଦେଖା ହେବ ।
କାଲୁ ଜୀବନ ପାଇଁ
wish କରିବାକୁ
cheers କରିବାକୁ···
କେବେହେଲେ ଭୁଲିବନି ।

(ହସି ହସି ପ୍ରସ୍ଥାନ)

[ବୃଦ୍ଧାସ୍ଥ ପୁରୁଷଙ୍କୁ
ଅନୁସରଣ କରି
ନାୟକ
ଓ
ଉପନାୟକ
ପ୍ରଥମ ଜୋନ୍‌କୁ
ଆସିଛନ୍ତି ।
ପଞ୍ଚମ ଜୋନ୍‌ରେ
ଆଲୋକ
କ୍ଷୀଣତର
ହୋଇ ଆସିବା ମାତ୍ରେ
ପ୍ରଥମ ଜୋନ୍
ଆଲୋକିତ ହୋଇଛି ।
କମ୍ପୋଜିସନ୍‌ରେ
ବୃଦ୍ଧାସ୍ଥ ପୁରୁଷ
ଦକ୍ଷିଣକୁ
ଓ ନାୟିକାର ପିତା
ବାମକୁ
ଗତି କରି
ଉଭୟ ଅନ୍ତିମ ସ୍ଥିତରେ
ବଡଖୁଣ୍ଟର
ପ୍ରତୀକ ରୂପେ
ସିଲହଟ୍
ସୃଷ୍ଟି କରିଛନ୍ତି ॥ ]

ଉପନାୟକ : ତମେ ?
ନାୟକ : ହଁ, ମୁଁ !
ଉପନାୟକ : ଏବଂ ମୁଁ !
ନାୟକ : ମୁଁ ଏବଂ ମୁଁ !
ମୁଁ ଦୁହେଁ !
ଉପନାୟକ : ହଁ,
ମୁଁ ଦୁହେଁ !
ନାୟକ : ମୁଁ ବୋଧେ କହୁ କହୁଥିଲି···
ଉପନାୟକ : ହଁ,
ତମେ କହୁଥିଲ—
ତମ ଆଖିରେ ପ୍ରେମ ହେଉଛି···
ନାୟକ : ଆଦ୍ୟ ବସନ୍ତରେ ଫୁଟିଥିବା
ପ୍ରଥମ ଫୁଲର କଅଁଳ ବାସ୍ନା !
ଉପନାୟକ : ଏବଂ
ପ୍ରେମରୁ catastrophe ହେଉଛି···
ନାୟକ : ପ୍ରେମକୁ ନେଇ
କାହାରିକୁ
ହତ୍ୟା କରାଯାଇ ପାରେନା !!

[ହଠାତ୍ ଏକ
ଅହେତୁକ ଆବେଗର
ବଶବର୍ତ୍ତୀ ହୋଇ
ନାୟକ
ପଞ୍ଚମ ଜୋନ୍‌କୁ
ଚାଲି ଆସିଛନ୍ତି ।
ପ୍ରଥମ ଜୋନ୍‌ରୁ
ଆଲୋକ
ଅପସରି ଯାଇ
ପୁନଶ୍ଚ
ପଞ୍ଚମ ଜୋନ୍‌କୁ
ଆଲୋକିତ କରନ୍ତି ।]

ଉପନାୟକ :
(ହସି ହସି
ନାୟକଙ୍କ
ନିକଟକୁ ଆସି)
ଏଇଟା ହିଁ ସ୍ୱାଭାବିକ ।
ନୂଆ କିଛି ଏଥିରେ ନାହିଁ ।

ନାୟକ : ମାନେ···

ଉପନାୟକ : ଯୁବକମାନଙ୍କ ଆଖିରେ
ପ୍ରେମ ହେଉଛି—
ଫୁଲର ବାସ୍ନା, ଉତ୍ସର୍ଗ,
romance,
ଆହୁରି କେତେ କ'ଣ···

ନାୟକ : ତା' ହେଲେ ପ୍ରୌଢ଼ମାନେ
ପ୍ରେମକୁ କ'ଣ ବୋଲି କହନ୍ତି ?

ଉପନାୟକ : ଅଭାବର ପରିପୂର୍ତ୍ତି···
filling up the blanks !

ନାୟକ : ଏବଂ
ଆପଣଙ୍କ ପ୍ରେମ ବି

ଉପନାୟକ : ତମେ ଏଇଟାକୁ
ପ୍ରେମ ବୋଲି ହିଁ କହିବ ।
କାରଣ, ପୁରୁଷ ଆଉ ସ୍ତ୍ରୀର
ସମ୍ପର୍କକୁ ନେଇ
ସାହିତ୍ୟ ଆଜି ପର୍ଯ୍ୟନ୍ତ
କେବଳ ଗୋଟାଏ ହିଁ ଶବ୍ଦ
ସୃଷ୍ଟି କରି ପାରିଛି ।
ଏବଂ
ସେଇଟା ହେଉଛି—
ପ୍ରେମ !

ନାୟକ : ତା'ହେଲେ
ଆପଣ କ'ଣ
ପ୍ରେମ କରନ୍ତି ନ ?

ଉପନାୟକ :
(କେବଳ ହସି
ଉଠିଛନ୍ତି)

ନାୟକ : ଆପଣ ପ୍ରତିଦିନ ଏଠିକି
କାହିଁକି ଆସନ୍ତି ?

ଉପନାୟକ : ମୁଁ ଜାଣେ,
ମତେ ପ୍ରତିଦିନ
ଏଠି ଦେଖି
ତମ ମନରେ
କେମିତି ଗୋଟାଏ
ଧାରଣା ସୃଷ୍ଟି ହେଉଛି···

ନାୟକ : ମୋର ଧାରଣାକୁ
ଆପଣ ଭୁଲ୍ ବୋଲି
କହି ପାରିବେ ?

ଉପନାୟକ : ଏଇ ତ···
ସେଇ ତୃତୀୟ ପୁରୁଷ
କହିଗଲେ—
ଧାରଣାଟା
ଗୋଟାଏ relative term !

ନାୟକ : କିନ୍ତୁ
ମୋର ପ୍ରଶ୍ନ ହେଉଛି—
ଆପଣ ପ୍ରତିଦିନ
ଏଠିକି
କାହିଁକି ଆସନ୍ତି ?

ଉପନାୟକ : କହୁଛି ।
ବର୍ତ୍ତମାନ ନ କହି
ଆଉ ଉପାୟ ନାହିଁ ।

ନାୟକ : ତା'ହେଲେ କୁହନ୍ତୁ—
ଉପନାୟକ : ତମେ ଜଣକ ସହ
ସମ୍ପର୍କ ତୁଟେଇ
ଏଠିକି
ଚାଲି ଆସିଚ ।
ଅଥଚ
ମୁଁ ଆସିଚି
ଅନ୍ୟ ଜଣକ ସହ
ସମ୍ପର୍କ ଯୋଡ଼ିବା ପାଇଁ ।
ନାୟକ : ସେ କ'ଣ ଆପଣଙ୍କ ପ୍ରେମିକା ?
ଉପନାୟକ : ପ୍ରେମିକା ?
(ହସି ଉଠି)
ସତେରେ ଭାଷାଟା ବି
ଖୁବ୍ ଅଜବ ଧରଣର ।
ଶବ୍ଦର ସୀମାଗୁଡ଼ାକ
କେତେ ସୀମିତ···
କେତେ ସଂକୁଚିତ :
ଏଇ ଧର,
ଏଇ ପ୍ରେମିକା ଶବ୍ଦଟି ।
ତମର ଜଣେ ପ୍ରେମିକା ଥିଲା ।
ତା'କୁ ନେଇ
ତମ ମନରେ ଗୋଟାଏ
painting ଅଙ୍କା ହେଇଚି !
ଯାହାକୁ ତମେ
ମୋର ପ୍ରେମିକା
ବୋଲି କହୁଚ,
ତା'ର ବି ଗୋଟାଏ painting
ମୋ ମନରେ
ଆଙ୍କି ହେଇ ଯାଇଚି ।

କିନ୍ତୁ
ଉଭୟ paintingsର
canvas,
colour
ଆଉ brush ମଧ୍ୟରେ
ହୁଏତ
ଆକାଶ ପାତାଳର ପାର୍ଥକ୍ୟ
ରହିଥାଇ ପାରେ ।
ଅଥଚ
ସମ୍ବୋଧନ ପାଇଁ ରହିଛି
ସେଇ ଗୋଟାଏ ମାତ୍ର ଶବ୍ଦ—
ପ୍ରେମିକା !

ନାୟକ : ସେ ଯାହାହେଉ—
ଆପଣ ତାଙ୍କର
ପ୍ରତୀକ୍ଷାରେ ରହିଛନ୍ତି ?

ଉପନାୟକ :
(ଦୀର୍ଘଶ୍ୱାସ)
ହଁ,
ପ୍ରତୀକ୍ଷା !
ଅନେକ ଘଟଣା,
କେତେଟା ବିଘଟଣ
ଏବଂ
କିଛିଟା ଦୁର୍ଘଟଣା ପରେ
ଏଇ ମୋର ଦୀର୍ଘ ପ୍ରତୀକ୍ଷା !!

[ଅନ୍ଧକାର]

## ଷଷ୍ଠ : ଅତୀତ

[ପର ମୁହୂର୍ତ୍ତରେ
ଦ୍ୱିତୀୟ କୋନ୍
ଆଲୋକିତ
ହୋଇଛି ।
ଅନ୍ୟ ଏକ
ପରିବେଶ ।
ହୁଏତ
ଅନେକ ବେଳୁ
ଉପନାୟିକାର ପତି
ଚନ୍ଦ୍ରାଗ୍ରସ୍ତ
ହୋଇ ରହିଛନ୍ତି ।
ସନ୍ଦେହ,
ଘୃଣା
ଓ ଅବିଶ୍ୱାସର
ତ୍ରିଭୁଜ ଭିତରେ
ହଠାତ୍ ସେ
ଅଣନିଃଶ୍ୱାସୀ
ହୋଇ ପଡ଼ିଛନ୍ତି ।
ତାଙ୍କ ପାର୍ଶ୍ୱରେ
ନିର୍ଜୀବ
ମୂର୍ତ୍ତି ଭଳି
ଉପନାୟକ
ଛିଡ଼ା ହୋଇ
ରହିଛନ୍ତି ।।

[ଇତି ମଧ୍ୟରେ
ସାଇକ୍ଲୋରାମାର
ଆଲୋକ
ବାଇଗଣୀ ରଙ୍ଗରେ
ରୂପାନ୍ତରିତ
ହୋଇଛି ।
କମ୍ପୋଜିସନରେ ମଧ୍ୟ
ପରିବର୍ତ୍ତନ ଘଟି
ସିଲହୁଟରେ ଥିବା
ଚରିତ୍ର ଗୁଡ଼ିକ
କୌଣସି ଏକ
ନୈତିକ ଦ୍ୱନ୍ଦର
ପରିସୀମାର
ସଙ୍କେତ ଦେଉଛନ୍ତି ।]

ଉପନାୟିକାର
ପତ୍ନୀ : ମୁଁ ତମକୁ
କାହିଁକି ଏଠିକି…
ଏତେ ବାଟ
ଏଇ lake କୂଳର
ଶେଷ ସୀମାକୁ
ଡାକି ଆଣିଚି,
ଜାଣିଚ ?
କାରଣ,
ଏଠି ସହରର
ସେଇ ବ୍ୟସ୍ତତା ନାହିଁ ।
ବ୍ୟବସାୟର ବିରକ୍ତି ନାହିଁ ।
କାରଖାନାର ଚିମିନି ଧୂଆଁରେ
ଶ୍ୱାସରୁଦ୍ଧ ହେବାର
କୌଣସି ଆଶଙ୍କା ନାହିଁ ।

ବିଶେଷ କରି
ମୋ ବିଚ୍ଛିନ୍ନ ପତ୍ନୀର
ଉପୂଙ୍କର ଉପସ୍ଥିତ ହାବ
ଷଚାକ୍ତ ହେବାର
କୌଣସି ସମ୍ଭାବନା ହିଁ ନାହିଁ ।
ଉପନାୟକ : ଏ ଆପଣ କ'ଣ କହୁଚନ୍ତି ?
ପତି : ତମେ ଜାଣିଚ,
ଆଜ ମୁଁ ଏତେ ବଡ଼ ଗୋଟାଏ
Iron Casting କାରଖାନା···
ଏତେ ବଡ଼ ଗୋଟାଏ ବ୍ୟବସାୟର
Sole Proprietor
କେମିତି ହେଇ ପାରିଚି ?
ଉପନାୟକ : ମୁଁ କେବଳ ଏତିକି ଜାଣେ,
ପିଲାଦିନେ
ଆପଣ ଆମ ଗାଁ ସ୍କୁଲରେ
ପଢୁଥିଲେ ।
ମୁଁ ଖୁବ୍ ଛୋଟ ହେଇଥିଲି ।
ପତି : ହଠାତ୍ ଦିନେ
ମୁଁ କାହାକୁ କିଛି ନ କହି
ଗାଁ ଛାଡ଼ି
କଲିକତା ଚାଲି ଆସିଲି ।
ଜୀବନ ସହ
ଅନେକ ଦିନ ଧରି
ମତେ ସଂଗ୍ରାମ କରିବାକୁ ପଡ଼ିଲା ।
କିନ୍ତୁ war timeରେ
କଣ୍ଟ୍ରାକ୍ଟରୀ କରି
ପ୍ରଚୁର ପଇସା
ରୋଜଗାର କଲି···
ପ୍ରଚୁର !

ଆଉ ତା'ପରେ···
ଏଇ କାରଖାନା ।
ତା'ପରେ ଗୋଟାଏ
Agricultural Firm !
ତା'ପରେ ଲୁହା ଖଣି···
ତା'ପରେ ମାଙ୍ଗାନିଜ···
ତା'ପରେ କ୍ରୋମାଇଟ୍···
ତା'ପରେ···!!

ଉପନାୟକ : କିନ୍ତୁ
ଆଜି ମତେ
ଏ ସବୁ କହିବାର ତାତ୍ପର୍ଯ୍ୟ ?

ପତି : କାରଣ,
ମୁଁ ପୁରୁଷର ଭାଗ୍ୟ
ଆଉ ନାରୀର ଚରିତ୍ର ଉପରେ
ଆଦୌ ବିଶ୍ୱାସ କରେନା !

ଉପନାୟକ : ପୁରୁଷର ଭାଗ୍ୟ
ଆଉ ନାରୀର ଚରିତ୍ର ?

ପତି : ହଁ,
ମୋର ଭାଗ୍ୟ,
ଆଉ ମୋ ସ୍ତ୍ରୀର ଚରିତ୍ର !

ଉପନାୟକ : ମୁଁ ଠିକ୍ ବୁଝି ପାରିଲିନି ।

ପତି : ମୁଁ ଯାହା ଥିଲି,
ଆଉ ଆଜି ଯାହା ହୋଇଛି—
ସେଇ ବ୍ୟବଧାନଟାର ନାଁ ଇ ତ
ଭାଗ୍ୟ !
ଅଥଚ ମୋର ସ୍ତ୍ରୀ—
Young,
educated,
progressive ବି !

ମୁଁ ଯାହା ଖୋଜିଥିଲି,
ଆଜି ସେ ଯାହା ଖୋଜୁଛି—
ଏଇ ବ୍ୟବଧାନଟାର ନାଁ କିନ୍ତୁ
ବିଡ଼ମ୍ବନା !
ଏବଂ
ଏଇ ବିଡ଼ମ୍ବନା ହେଉଛ ତମେ !

ଉପନାୟକ : ମୁଁ ? !

ପତ୍ନୀ : ହଁ,
ତମେ !
ତମେ,
ମୁଁ
ଆଉ ସେ—
ଆମକୁ ନେଇ
କେମିତି ଗୋଟାଏ
ତ୍ରିଭୁଜ ତିଆରି ହୋଇ ଯାଇଛି ।
ଧୀରେ ଧୀରେ
ଏଇ ତ୍ରିଭୁଜଟା
ମଜ୍‌ବୁତ ହେବାରେ ଲାଗିଛି !

ଉପନାୟକ : ନା ··!!

ପତ୍ନୀ : କିନ୍ତୁ ମୁଁ ପଚାରୁଛି—
ତମେ ଏତେ ଶୀଘ୍ର
କେମିତି ଭୁଲିଗଲ···

ଉପନାୟକ : ନା,
ମୁଁ ଭୁଲିନି ।
ସେ ଦିନ···
ବ୍ୟର୍ଥତାର ପାହାଡ଼ଟାକୁ
ମୁଣ୍ଡରେ ଲଦି
ପୁଞ୍ଜ୍‌ପାଥର
ପଥର ଚଟାଣ ଉପରେ ଗୁଲି ଗୁଲି

ମୋ ପାଦରୁ
ଟୋପା ଟୋପା ରକ୍ତ ଝରୁଥିଲା ।
ଗୋଡ଼ ଦ'ଟା
ମୋ ନଜର ବୋଝ ବି
ସମ୍ଭାଳି ନ ପାରି
ଥରି ଥରି ପଡ଼ୁଥିଲା ।
ହାତ ଦ'ଟା
ଶୁଖିଲା ବାହୁଙ୍ଗା ଭଳି
ସାମ୍ନାକୁ ଝୁଲି ପଡ଼ୁଥିଲା ।
ଜଭଟା ଶୁଖି ଶୁଖି ଯାଉଥିଲା ।
ମୁହଁ ମାଡ଼ି
ତଳେ ପଡ଼ିଯିବାର
ଠିକ୍ ପୂର୍ବ ମୁହୂର୍ତ୍ତରେ
ଆପଣ ଇ ଆସି
ମୋ କାନ୍ଧରେ
ହାତ ରଖିଥିଲେ ।
ମତେ ଠିକ୍
ଚିହ୍ନି ପାରିଥିଲେ ।
ମତେ ଡାକି ନେଇ
ନିଜ firmରେ
ଖଣ୍ଡେ ଚାକିରି ଦେଇଥିଲେ ।
ପଞ୍ଚ : କାରଣ,
ମୁଁ ଜାଣିଥିଲି—
ପଥର ଦେହରେ
ଧକ୍କା ଖାଇ
ଫେରିଥିବା ଢେଉ···
ଏବଂ
ଫୁଟ୍‌ପାଥ ଦେହରେ
ଧକ୍କା ଖାଇଥିବା ମଣିଷ—

ଏ ଦୁହେଁ କେବେହେଲେ
ଅବଶ୍ୟସ୍ତ ହେଇ ପାରିବେନି ।
ମୁଁ ଠିକ୍
ତମରି ଭଳି ଜଣକୁ
ଖୋଜି ବୁଲୁଥିଲି—
ଶିକ୍ଷିତ···
ଅଥଚ
ସବୁକଥା
ଚୁପ୍‌ଚାପ୍ କେବଳ ଶୁଣିବାକୁ
ପ୍ରସ୍ତୁତ ଥିବା
ଜଣେ candidate !
ମୋ establishmentର
ଜଣେ Insider !

ଉପନାୟକ : ମୋ ପ୍ରତି ··
ଆପଣ
ଅନେକ ଦୟା କରିଚନ୍ତି···
ଅନେକ sympathy ଦେଖେଇଚନ୍ତି ।

ପତି : ଭାବିଥିଲି
Factory....
business....
firmର
ଗହଳି ଭିତରୁ ମୁକ୍ତି ପାଇବା
ମୋ ପକ୍ଷେ ସମ୍ଭବ ହେଉନି ।
ମୋର ସ୍ତ୍ରୀ···
ଘରର କୁଠରୀକାନ୍ଥ ଭିତରେ
ଏକା ଏକା
ଖୁବ୍ ବ୍ୟତିବ୍ୟସ୍ତ ହେଇ ପଡ଼ୁଚି ।
ତମେ ତା'ର
boredom ଦୂର କରିବ ।

ତା' ମନରେ ଫୁର୍ତ୍ତି ଦେବ ।
ତା' ଲେଖାଲେଖିରେ...
ସାହିତ୍ୟ-ଚର୍ଚ୍ଚାରେ
ତା'କୁ ଟିକେ ସାହାଯ୍ୟ କରିବ ।
କୁଆଡ଼େ ଗଲା ବେଳେ
ତା'କୁ ଟିକେ
company ଦେବ ।
ଅଥଚ...
ମୋର ଅନୁକମ୍ପା...
ମୋର ଅନୁମତି...
ମୋର ଅନୁପସ୍ଥିତି ..
ସବୁ କିଛିର
ସୁଯୋଗ ନେଇ ତମେ ମତେ
ବେଶ୍ exploit କରି ପାରିଚ !!

ଉପନାୟକ : ବରଂ ମୁଁ କହିବି
ମୋର ଅସହାୟତା,
ମୋର ବିବଶତା,
ଆଉ ମୋର ନିଶ୍ଚିହତାର
ସୁଯୋଗ ନେଇ
ଆପଣ ହିଁ ମତେ exploit କରିଚନ୍ତି ।

ପତି : ସେ ଯାହା ହେଉ,
ମୁଁ ଆଜ
ଯୁଆ'ର ଗୋଟାଏ ମୀମାଂସା ଚାହେଁ ।

ଉପନାୟକ : ମୀମାଂସ !
(ହସି ଉଠିଛନ୍ତି)

ପତି : ବନ୍ଦକର... !
Stop it I say !

ଉପନାୟକ : ମୁଁ ଆଜ
ଠିକ୍ ବୁଝି ପାରିଚ,

ତମ ଭଳି ଗୋଟାଏ Capitalist
ନିଜର ବାହୁବଳ
ଆଉ ଚତୁରତା ଦ୍ୱାରା
ଅଜସ୍ର ସମ୍ପତ୍ତିର
ଅଧିକାରୀ ହୋଇ ପାରିବା ପରେ
ତଳକୁ ତଳକୁ ଓହ୍ଲେଇ ଆସିଥିବା
ଜୀବନର ଶେଷ ପାହାଚରେ
ହୁଏତ ଗୋଟାଏ ଅଳ୍ପବୟସ୍କା
ସୁନ୍ଦରୀ ତରୁଣୀକୁ
ବାହା ହୋଇ ପାରେ,
କିନ୍ତୁ
କେବେହେଲେ
ନିଃଶଙ୍କ ରହି ପାରେନା,
କେବେ ନୁହେଁ !!
ଏବଂ
ତମର ଏଇ ଶଙ୍କା,
ସନ୍ଦେହ, ଅବିଶ୍ୱାସ—
ସବୁ ମିଶି ପ୍ରମାଣ କରି ଦେଉଛି—
ତମେ ଗୋଟାଏ କାପୁରୁଷ !
ତମର କୌଣସି ପୌରୁଷ ନାହିଁ !
କୌଣସି ହୃଦୟ ନାହିଁ !!

ପତି : I say you shut up !!

ଉପନାୟକ : ଏ ଦୁନିଆଁରେ ବଞ୍ଚି ରହିବାର
ତମର କୌଣସି ଅଧିକାର ନାହିଁ !!

ପତି : You scoundrel....
traitor....
go to hell !!
Or
I shall kill you !!

[ଅନ୍ଧକାର]

# ସପ୍ତମ : ଉତ୍ତର ଅତୀତ

[ତତ୍‌କ୍ଷଣାତ୍
ଦୃଶ୍ୟସ୍ଥ କୋନ୍
ଆଲୋକିତ
ହୋଇ ଉଠିଛି ।
ପୁନଶ୍ଚ
ଭିନ୍ନ ଏକ
ପରିବେଶ ।
ଉପନାୟିକା
ଅନେକ ଅନେକ
ଆଶଙ୍କା ଓ
ଉତ୍କଣ୍ଠାର ସହ
ସମ୍ମୁଖକୁ
ପାଶ୍ଚାତ୍ କରି
ସାମାନ୍ୟ ଦୂରରେ
ଛିଡ଼ା ହୋଇ
ରହିଛନ୍ତି ।
ଠିକ୍ ଏତିକିବେଳେ
କ୍ଳାନ୍ତ-ବ୍ୟର୍ଥ
ଉପନାୟକ
ପ୍ରବେଶ କରି
ଦୀର୍ଘଶ୍ୱାସ ସହ
ବସିଛନ୍ତି ।।

ପରିବେଶରେ
ପରିବର୍ତ୍ତିନ ମାଧ୍ୟ
ସାଇକ୍ଲୋରାମାର

ଆଲୋକରେ ମଧ୍ୟ
ପରିବର୍ତ୍ତନ ଘଟି
ସବୁଜମା
ସୃଷ୍ଟି ହୋଇଛି ।
ତତ୍ସ ସଙ୍ଗେ ସଙ୍ଗେ
କମ୍ପୋଜିସନ୍
ଅନ୍ୟ ଏକ ଚିତ୍ର
ଅଙ୍କନ କରି
ଭିନ୍ନ ଏକ
କୋଠରୀର
ଆଭାସ ଦେଇଛି ।
କ୍ରମାନ୍ୱୟରେ
ବାମରୁ ରହିଛନ୍ତି—
ନାୟିକାର ପିତା
ନାୟକ
ପ୍ରଥମ ଶିଷ୍ୟ
ଉପନାୟିକାର ପତି
ଦ୍ୱିତୀୟ ଶିଷ୍ୟ
ଗୁରୁଦେବ
ଓ ତୃତୀୟ ପୁରୁଷ ।।]

ଉପନାୟିକା : କ'ଣ ହେଲା ?
କିଛି ଖବର ପାଇଲ ?

ଉପନାୟକ : ନା !
ସବୁଠି କେବଳ
ସେଇ ଗୋଟାଏ ଉତ୍ତର—
ନା !
ଅନେକ investigation କରାଗଲା···
ଅନେକ ଚେଷ୍ଟା କରାଗଲା ।
ଗତ ସାତ ଦିନ ହେଲା
ସମସ୍ତେ ସବୁଠି ତାଙ୍କୁ ଖୋଜୁଚନ୍ତି ।
ହେଲେ ସବୁ ବୃଥା,
ସମସ୍ତେ ବ୍ୟର୍ଥ ।

ଉପନାୟିକା : ସେ ସେଦିନ
ଘରୁ ଗୋଡ଼ କାଢ଼ି ଗଲାବେଳେ
ମୋ ମନକୁ କେଜାଣି କାହିଁକି
ପାପ ଛୁଇଁଥିଲା ।
କେମିତି ଗୋଟାଏ
ଅଶୁଭ ଝଡ଼ର ସଂକେତରେ
ମୁଁ ଭୟ ପାଇ ଯାଇଥିଲି ।

ଉପନାୟକ : ଦୁର୍ଯୋଗକୁ ମୁଁ ବି ତାଙ୍କର
Programme ବିଷୟରେ
ଆଗରୁ କିଛି ହେଲେ
ଜାଣି ନ ଥିଲି ।
ହଠାତ୍ ତାଙ୍କ ସହ ମତେ ବି
ଯିବାକୁ ପଡ଼ିଲା ।
କିନ୍ତୁ
ବାଟରେ ସେ ମତେ ଏକା ଏକା
ଫେରିଯିବାକୁ କହିଲେ,
ମୁଁ ତାଙ୍କ କଥା
କିଛି ବୁଝି ପାରିଲିନି ।
ଚୁପଚାପ୍ ଫେରି ଆସିଲି ।

ଉପନାୟିକା : ତା' ପରେ··· ?

ଉପନାୟକ : କେତେ ଥର ମୁଁ ତମକୁ
ସେଇ ଗୋଟାଏ କଥାକୁ
ବୁଝେଇବି କହିଲ ?
ତା'ପରେ କ'ଣ ହେଲା
ମୁଁ ଜାଣିନି ।
ସେ ବିଷୟରେ
ମୁଁ କିଛି କହି ପାରିବିନି ।

ଉପନାୟିକା : ବାଟରେ ସେ କିଛି ତମକୁ
କହି ନ ଥିଲେ··?

ଉପନାୟକ : ନା !
ଉପନାୟିକା : ନା,
ତମେ ସବୁ ଜାଣିଚନ୍ତି ।
ଅଥଚ
ମତେ କିଛି ଗୋଟାଏ ଲୁଚଉଚ ।
ଉପନାୟକ : ତମର ମାନସିକ ଅବସ୍ଥାକୁ
ମୁଁ ଠିକ୍ ବୁଝିପାରୁଚି ।
ତମ ପ୍ରତି ମୋର
ଖୁବ୍ ସହାନୁଭୂତି ରହିଚି ।
ଉପନାୟିକା : ତା'ହେଲେ କୁହ···
Please ····
ଦୟାକରି କୁହ !
ଉପନାୟକ : ମତେ ତମେ କହିବାକୁ
ବାଧ କରନା !
ମୁଁ ତମକୁ
କେବେହେଲେ
କହିପାରିବିନି !
ଉପନାୟିକା : ତମକୁ ଯେମିତି ହେଲେ ବି
କହିବାକୁ ପଡ଼ିବ ।
ଉପନାୟକ : ତମେ କେବେହେଲେ
ସହ୍ୟ କରି ପାରିବନି !
ଉପନାୟିକା : ମୁଁ ସବୁ ସହ୍ୟ କରିପିବି !
ଉପନାୟକ : ସେ ତମ ଚରିତ୍ରକୁ
ସନ୍ଦେହ କରୁଥିଲେ !
ଉପନାୟିକା : ନା···!
ଉପନାୟକ : ମୋର ବିଶ୍ୱସ୍ତତାକୁ
ଅବିଶ୍ୱାସ କରୁଥିଲେ ।
ଉପନାୟିକା : ନା···!!

ଉପନାୟକ : କେବଳ ସେତିକି ନୁହେଁ,
ତମ ଆଉ ମୋ ଭିତରେ
ଗୁପ୍ତ-ପ୍ରଣୟ· ·
ମାନେ
କେମିତି ଗୋଟାଏ ପାପ-ସମ୍ପର୍କ
ରହିଛି ବୋଲି
ସେ ଧରି ନେଇଥିଲେ !

ଉପନାୟିକା : ନା···ନା···ନା !!!
ଏ ସବୁ ମିଛ !
ଏକଦମ୍ ମିଛ !!

ଉପନାୟକ : ଏବଂ
ସେଇଥିପାଇଁ ବୋଧେ
ସେ ଆତ୍ମହତ୍ୟା କରିଛନ୍ତି !

ଉପନାୟିକା : ଆତ୍ମହତ୍ୟା···!?
(କାନ୍ଦି ଉଠିଛନ୍ତି)

ଉପନାୟକ : ତାଙ୍କ ଭଳି
ଗୋଟାଏ Capitalist
ନିଜର ବାହୁବଳ
ଆଉ ଚତୁରତା ଦ୍ୱାରା
ଅଜସ୍ର ସମ୍ପତ୍ତିର
ଅଧିକାରୀ ହୋଇ ସାରିବା ପରେ
ତିଳକୁ ତିଳକୁ
ଓହ୍ଲାଇ ଆସିଥିବା
ଜୀବନର
ଶେଷ ପାହାଚରେ ପହଞ୍ଚି
ହୁଏତ
ତମ ଭଳି ଗୋଟାଏ ଅଳ୍ପବୟସ୍କା
ସୁନ୍ଦରୀ ସ୍ତ୍ରୀକୁ
ବାହା ହୋଇପାରେ,

କିନ୍ତୁ
କେବେହେଲେ
ନାଃଶଙ୍କ ଉତ୍ତିବା ପାରେନା !
ଉପନାୟିକା : ତାଙ୍କ ଆଖିରେ···
ତାଙ୍କ ଆଖିରେ ଆଜ ମୁଁ ଗୋଟାଏ
ନଷ୍ଟ ଜନ୍ମର କଳଙ୍କ !
ଉପନାୟକ : ତମେ ନଜ ପ୍ରତି
ଅନ୍ୟାୟ କରିବାକୁ ଯାଉଚ !!
ଉପନାୟକ : ମୁଁ କିନ୍ତୁ ଭାବିଁଥିଲି—
ସୁନ୍ଦର ଏଇ ଫ୍ଲାଟ୍‌ର
ଘରକଡ଼େ ଫୁଟିଥିବା
ନାଲି ନେଳୀ ଫୁଲ ଭଳି
ଗୋଟାଏ ରଙ୍ଗୀନ,
ଅଥଚ
ସହଜ··
ମୁକ୍ତ ଜୀବନ ।
କିନ୍ତୁ
ସେ ମତେ ବାଧ୍ୟ କରିଥିଲେ—
ଗୋଟାଏ କାଚଘର ଭିତରେ
ନିର୍ଜୀବ କଣ୍ଢେଇ ଭଳି
ଆଜୀବନ କ୍ରୀତଦାସୀର ଭୂମିକା
ଗ୍ରହଣ କରିବାକୁ !
ମୁଁ ଆଉ ବି ଭାବିଁଥିଲି—
ଛୋଟ ଏଇ ଲନ୍‌ର
ଘରକଡ଼େ ଉଡ଼ି ବୁଲୁଥିବା
ଛୋଟ ଛୋଟ ପକ୍ଷୀଙ୍କ ସ୍ୱନ ଭଳି
ଅନେକ କଅଁଳ,
ଅଥଚ
ମିଠା ମିଠା କାକଳି !

କିନ୍ତୁ
ମତେ ସେ ବାଧ୍ୟ କରିଥିଲେ––
ମାଂସଳ ପଥରର
ଏଇ ଗୁହାକାନ୍ଥ ଭିତରେ
ନିର୍ବାକ୍ ମୂର୍ତ୍ତି ଭଳି
ଯେତେ ସବୁ ନିଷ୍ଠୁର ଉପହାସ
ସହ୍ୟ କରିବାକୁ !

ଉପନାୟକ : ମୁଁ ତମକୁ ବୁଝିଛି ।
ଅନେକ ବି ବୁଝେଇଛି !

ଉପନାୟିକା : ମୋର ନାରୀତ୍ୱ
ଚିତ୍କାର କରିବାକୁ ଗ୍ରହଣି ବି
କରିପାରିନି ।
ମୋର ମାତୃତ୍ୱ
ଶ୍ୱାସରୁଦ୍ଧ ହୋଇ ଆସିଛି ।
ଏବଂ
ଠିକ୍ ସେଇ ମୁହୂର୍ତ୍ତରେ
ଦେଖା ଦେଇଚ ତମେ !
ତମ ଭିତରେ
ମୁଁ ହଠାତ୍
ଆବିଷ୍କାର କରି ବସିଛି—
ଅନେକ ସ୍ୱପ୍ନ···
ଅନେକ ସମ୍ଭାବନା ··
ଅନେକ ଅନେକ ସାର୍ଥକତା !

ଉପନାୟକ : ବୋଧେ ସେଇଟା ହିଁ ଥିଲା
ମୋ ଜୀବନର ପ୍ରଥମ ସୌଭାଗ୍ୟ !

ଉପନାୟିକା : ପ୍ରତ୍ୟେକ ନାରୀର ଜୀବନରେ
ଠିକ୍ ଏଇଭଳି
ଜଣେ ଜଣେ ପୁରୁଷ ଆସନ୍ତି,

ଯେଉଁମାନଙ୍କ ସ୍ପର୍ଶ···
ସଂସର୍ଗ···
ହୁଏତ ସାନ୍ନିଧ—
ଆତ୍ମ-ପ୍ରତ୍ୟୟ ନ ଥିବା
ଗୋଟାଏ ନାରୀ ମନରେ
ଗଭୀର ପ୍ରତ୍ୟୟ ଆଣିଦିଏ,
ତା'ର ଶୋଇ ରହିଥିବା ନାରୀତ୍ୱକୁ
ଚେଇଁଦିଏ !!
ଆଜ ତମେ···

ଉପନାୟକ : ମୁଁ ସତ କହୁଛି,
ଅନେକ ଘୂରି ବୁଲିବା ପରେ
ବ୍ୟର୍ଥତାର ପାହାଡ଼ରେ ଭାରକ୍ରାନ୍ତ
ମୋ ଭଳି ଗୋଟାଏ କ୍ଲାନ୍ତ···
ଶ୍ରାନ୍ତ ପଥିକର
ଏକମାତ୍ର ଲକ୍ଷ୍ୟସ୍ଥଳୀ ହେଉଛି ତମେ !
କେବଳ ତମେ !

ଉପନାୟିକା : ଏ ତମେ କ'ଣ କହୁଛ ?

ଉପନାୟକ : ମୁଁ ମାନୁଛି,
ଦିନେ ସେ ତମ ସିନ୍ଥାରେ
ସିନ୍ଦୂରର
ଗାର ଟାଣି ଦେଇଥିଲେ ।
ଆଜ କିନ୍ତୁ···
ମୁଁ ତମ ମଥାରେ
ମୋ ରକ୍ତର
ଗୋଟାଏ ଲାଲ୍ ଟୋପା
ଦେବାକୁ ଚାହେଁ !!

ଉପନାୟିକା : କିନ୍ତୁ···

ଉପନାୟକ : ତମ ଜୀବନର ପରିପୂର୍ତ୍ତି ପାଇଁ
ସେ ନୁହେଁ···
ମୁଁ ଇ ଅନିବାର୍ଯ୍ୟ !
ମୁଁ ଇ ଅପରିହାର୍ଯ୍ୟ !!

ଉପନାୟିକା : ମତେ···
ମତେ ଟିକେ
ସମୟ ଦିଅ···
ଦୟାକରି
ଶେଷ ଥର ପାଇଁ
ଆଜି ଟିକେ
ଚିନ୍ତା କରିବାକୁ ଦିଅ !
Please··· !!

(ଉପନାୟକଙ୍କୁ
ଆଶ୍ରା କରି
ଅସହାୟତାବଶତଃ
ତଳକୁ
ଖସି ଆସିଛନ୍ତି)

[ଅନ୍ଧକାର]

# ଅଷ୍ଟମ : ଏବଂ ଅନ୍ତିମ ବର୍ତ୍ତମାନ

[ ଠିକ୍
ସେହି ମୁହୂର୍ତ୍ତରେ
ଚତୁର୍ଥ ଜୋନ୍
ଆଲୋକିତ ହୋଇଛି ।
ପୂର୍ବ ପରିଚିତ
ସାଧାରଣ ସ୍ଥାନର
ପରିବେଶ ।
ଉପସ୍ଥିତ :
ଆବେଗସିକ୍ତ
ଉପନାୟକ
ଏବଂ
ଦୀର୍ଘ ସମସ୍ତଂ ଧରି
ନୀରବରେ
ଉପନାୟକଙ୍କ
ଉପାଖ୍ୟାନ
ଶୁଣି ସାରିଥିବା
ନାୟକ ॥

ସାଇକ୍ଲୋରାମା
ନୀଳ ଆଲୋକରେ
ଆଲୋକିତ ।
କମ୍ପୋଜିସନ୍ ମଧ୍ୟ
ପୂର୍ବ ସୂଚିତ
ସାଧାରଣ ସ୍ଥାନର
ପ୍ରତୀକ
ସୃଷ୍ଟି କରିଛି ।

ସମାନ୍ତରରେ
ସିଲ୍‌ହୁଟ୍‌ରେ
ରହିଛନ୍ତି-
ନାୟିକାର ପିତା,
ଉପନାୟିକାର ପତି,
ପ୍ରଥମ ଶିଷ୍ୟ,
ନାୟିକା,
ଦ୍ୱିତୀୟ ଶିଷ୍ୟ,
ଗୁରୁଦେବ
ଓ ତୃତୀୟ ପୁରୁଷ ।।]

ଉପନାୟକ :
(ପ୍ରାୟତଃ
ଚକ୍କାର
କଣ ଭଳି)
ସମୟ···ସମୟ···ସମୟ !!
ଅପେକ୍ଷା କରିବାର ଧୈର୍ଯ୍ୟ
ମୋର ଆଜି ନାହିଁ···ନାହିଁ !!

ନାୟକ : ଆପଣ···ଆପଣ ବୋଧେ
ଖୁବ୍ emotional ହୋଇ ପଡ଼ୁଚନ୍ତି ।

ଉପନାୟକ : ଏଁ··· ? ଓଃ··· !
ହଁ ।
ଯା' ଭିତରେ
ନଅ ମାସ ବିତି ଯାଇଛି ।
ମୁଁ ତା' ଉପରେ
ନିଜର ମାୟା ଜାଲ
ବିଛେଇବାରେ ଲାଗିଛି ।
ମୁଁ ଖୁବ୍ ଭଲ ଭାବେ
ଉପଲବ୍ଧି କରି ସାରିଛି—
ଅନେକ ଦୂର ବୁଲିଥିବା
ବ୍ୟର୍ଥତାର ପାହାଡ଼ରେ ଘରଫାନ୍ତ

ମୋ ଭଳି ଗୋଟାଏ କ୍ଳାନ୍ତ…
ଶ୍ରାନ୍ତ ମଣିଷର
ଏକମାତ୍ର ଲକ୍ଷ୍ୟ ସ୍ଥଳୀ ହେଉଛି—
ଏଇ ବିଭବଶାଳିନୀ ସୁଶ୍ରୀ ତରୁଣୀର
ଦେହ ଆଉ ଧନର ଗନ୍ତାଘର !
ଆଜି ପର୍ଯ୍ୟନ୍ତ
ପ୍ରବୋଧନା ଜଣାଇବା ବାହାନାରେ
ତା'କୁ convince କରିବାକୁ ଚେଷ୍ଟା କରୁଛି—
ତା' ଜୀବନର ପରିପୂର୍ତ୍ତି ପାଇଁ
ସେଇ ପୁଞ୍ଜିପତି ନୁହେଁ,
ମୁଁ ହିଁ ଅନିବାର୍ଯ୍ୟ !

ନାୟକ : କିନ୍ତୁ
ତାଙ୍କର ପତି…
I mean husband ?

ଉପନାୟକ :
(ହସିଉଠି)
ସେ ଆଉ
କେବେହେଲେ ଫେରିବେନି ।
ମୁଁ ସବୁଦିନ ପାଇଁ
ନିଷ୍କଣ୍ଟକ ହୋଇ ସାରିଛି ।

ନାୟକ : ଆପଣ କେମିତି ଜାଣିଲେ—
ସେ ଆଉ ଫେରିବେନି ?

ଉପନାୟକ : କାରଣ, ସେ ଦିନ
ଏକ ଅହେତୁକ ମୁହୂର୍ତ୍ତରେ
ଅତି ସନ୍ତର୍ପଣରେ
ମୁଁ ନିଜେ ହିଁ ତାଙ୍କୁ ହତ୍ୟା କରି
ତାଙ୍କର ଲାସ୍‌ଟାକୁ
lake ଭିତରେ ଫିଙ୍ଗି ଦେଇଥିଲି !!

ନାୟକ : ହତ୍ୟା !!

ଉପନାୟକ : ହଁ ।
ଯା'ର କୌଣସି ଚିହ୍ନ ନାହିଁ,
ବର୍ଣ୍ଣ ନାହିଁ,
ଗନ୍ଧ ସୁଦ୍ଧା ନାହିଁ !
ନାୟକ : ତମେ…
ତମେ ତା'ହେଲେ
ଗୋଟାଏ ହତ୍ୟାକାରୀ !!
ଗୋଟାଏ murderer !!
ଉପନାୟକ : ଆଶ୍ଚର୍ଯ୍ୟ !
ତମେ ଏମିତି
ଚିତ୍କାର କରୁଚ କାହିଁକ ?
ନାୟକ : ଯେହେତୁ
ତମେ ଗୋଟାଏ ମଣିଷକୁ
ଜୀବନରେ ମାରି ଦେଇଚ
ଏବଂ
ଫେରାର୍ ହୋଇ ଯାଇଚ !
ଉପନାୟକ : Too childish !
ଏଥିରେ ଏତେଟା
ଉତ୍ତ୍ୟକ୍ତ ହେବାର କିଛି ନାହିଁ ।
It's a very simple fact !
ଆମେ ଦୁହେଁ
କେହି କାହାରିକୁ ଚିହ୍ନୁନା
ଅଥବା ଜାଣୁନା ।
ତମେ ମୋ ଆଗରେ
ତମ କଥା କହିଲ,
ଏବଂ
ମୁଁ ତମ ଆଗରେ
ମୋ କଥା କହିଲି ।
And that's all !

ନାୟକ : ସେ ଯାହା ହେଉନା କାହିଁକି···
ତମେ ଗୋଟାଏ ଜଘନ୍ୟ ପାପୀ !
ଗୋଟାଏ ଭୟଙ୍କର ଅପରାଧୀ !!
ଉପନାୟକ : ତମେ ବି ଭୁଲି ଯାଅନି—·
ମୁଁ ହୁଏତ ଜଣେ ବ୍ୟକ୍ତିକୁ
ହତ୍ୟା କରିଚି,
କିନ୍ତୁ ତମେ···
ତମେ ଗୋଟାଏ ସମଗ୍ର ପରିବାରକୁ
ହତ୍ୟା କରିଚ !
ତା' ସଙ୍ଗେ ସଙ୍ଗେ
ଗୋଟାଏ ପଳାତକ···
ଗୋଟାଏ escapist ସାଜି
ଚାଲି ଆସି
ନିଜେ ହିଁ ନିଜର ଖୁନ୍ କରିଚ !
ତେଣୁ
ମୁଁ ଯଦି ଗୋଟାଏ ହତ୍ୟାକାରୀ,
ତମେ ତା'ହେଲେ
ଗୋଟାଏ ଆତ୍ମ-ହନ୍ତା !!
ଏବଂ
Indian Penal Code ଦୃଷ୍ଟିରେ
ଏହି ଦୁଇଟା ଯାକ ହେଉଚି ଅପରାଧ !
ତେଣୁ ତମେ ଆଉ ମୁଁ
ଉଭୟେ ଅପରାଧୀ !!
ନାୟକ : ନା !
ମୁଁ ଏହି ମୁହୂର୍ତ୍ତରେ
ତମକୁ Police ହାତରେ
hand over କରିବାକୁ ଚାହେଁ ।
କୁହ, କ'ଣ ତମର ନାଁ ?
ଉପନାୟକ : ପବିତ୍ର··· !

ନାୟକ : ପବନ···?
ମୋ ନାଁ ବି ତ ପବନ !
ତମେ ମିଛ କହୁଚ ।
ତମ ବାପାଙ୍କ ନାଁ କ'ଣ ?

ଉପନାୟକ : ସତ୍ୟ···!

ନାୟକ : ଆଶ୍ଚର୍ଯ୍ୟ !
ତମେ କ'ଣ ମୋ ସହ
ଥଟ୍ଟା କରୁଚ ?
ମୋ ବାପାଙ୍କ ନାଁ ଯେ ସତ୍ୟ···!
କୋଉଠି ତମ ଘର ?

ଉପନାୟକ : ଫ୍ଲାଟ୍ ନମ୍ବର ପାଞ୍ଚ୍ ଶୂର୍ ତିନ୍ ।
ଟାଇପ୍ ଟୁ ।
ୟୁନିଟ୍ ଓ୍ୱାନ୍ ।
ଭୁବନେଶ୍ୱର ।

ନାୟକ : ଅସମ୍ଭବ !
ଏଇ ଘରେ ତ
ବର୍ତ୍ତମାନ ମୁଁ ରହୁଚି ।
Fraud.... !
Traitor···!!
ତମେ କେବଳ
ମୋର କଥାଗୁଡ଼ାକ
ମୋର ଆଗରେ
କହି ଗଲଚ !
ଏ ସବୁ ଯେ
ମୁଁ ନିଜେ···
ମୋର ପରିଚୟ !
ମୋର ଠିକଣା !!
ମୋର identification ..!!!.

ଉପନାୟକ : ଚିତ୍କାର କରି କିଛି ଲାଭ ନାହିଁ ।
ମୁଁ ଯାହା କହିଲି,
ସବୁ ସତ ।
ମୁଁ ଜାଣିବାରେ
ତମ ଆଉ ମୋ ଭିତରେ
ବିଶେଷ କିଛି ତଫାତ୍ ନାହିଁ ।
ତଫାତ୍‌ଟା ହେଉଛି
କେବଳ ବୟସ—
ପ୍ରାୟ କୋଡ଼ିଏ ବର୍ଷର ବ୍ୟବଧାନ !!

(ଅଟ୍ଟହାସ୍ୟ)

ନାୟକ : ନା···ନା· ·ନା·· !!!

[ସାଇକ୍ଲୋରାମା
ସମେତ
ସମଗ୍ର ମଞ୍ଚଟି
ଆଲୋକ
ଲାଲ୍ ରଙ୍ଗରେ
ହଠାତ୍
ରକ୍ତାକ୍ତ
ହୋଇ ଉଠିଛି ।]

(ପରମୁହୂର୍ତ୍ତରେ
ଉତ୍ତ୍ୟକ୍ତ ନାୟକ
ପ୍ରୌଢ଼
ଉପନାୟକଙ୍କୁ
ଆକ୍ରମଣ କରି
ଗଳା ଚିପି
ତାଙ୍କୁ ହତ୍ୟା କରିଛନ୍ତି)

[ଅନ୍ଧକାର]

# ନବମ : ଭବିଷ୍ୟତ

[ସାଇକ୍ଲୋରାମାରେ
ଅନେକ ରଙ୍ଗର
ଆଲୋକର ବର୍ଣ୍ଣାଳୀ ।
କମ୍ପୋଜିସନ୍‌ର
ପ୍ରତ୍ୟେକ ଚରିତ୍ର
ଦୁଇ ହାତ
ପ୍ରଶସ୍ତ କରି
ଅସହାୟ
ଶୂନ୍ୟତାକୁ
ଆହ୍ୱାନ କରିଛନ୍ତି ॥

ମଞ୍ଚ ଶୂନ୍ୟ ॥

ଧୀରେ ଧୀରେ
ଗାମ୍ଭୀର୍ଯ୍ୟ ସହକାରେ
ତୃଷାର୍ତ୍ତ ପୁରୁଷ
ଅଗ୍ରସର ହୋଇ
ମଞ୍ଚର
ସମ୍ମୁଖ ଭାଗକୁ
ଆସିବା ମାତ୍ରେ
ଫୁଟ୍ ଲାଇଟ୍‌ରୁ
ଆଲୋକର
ଏକ ତୀବ୍ର ରେଖା ଆସି
ତାଙ୍କ ମୁଖମଣ୍ଡଳକୁ
ଆଲୋକିତ
କରିଛି ॥]

କ୍ଳାନ୍ତ ପୁରୁଷ :
(ଦର୍ଶକଙ୍କ ପ୍ରତି)

ଏଇ ଘଟଣାର କିଛି କ୍ଷଣ ପରେ
ପୋଲିସ୍ ଆସି ସେଠି ପହଞ୍ଚ ଦେଖିଲେ—
ଜଣେ ଯୁବକର ମୃତ ଦେହ ତଳେ ପଡ଼ି ରହିଚି···!
A dead body of a youngman !!
ଏବଂ ତା' ପରଦିନ ସକାଳେ
ସମ୍ବାଦ-ପତ୍ରର ଶେଷ ପୃଷ୍ଠାର
ଶେଷ କଲମ୍‌ର ଶେଷାଂଶରେ ପ୍ରକାଶ ପାଇଥିଲା—
ଅଚିହ୍ନା ଯୁବକର ଆତ୍ମହତ୍ୟା···!
Suicide of an
unidentified youngman !!

[କ୍ରମଶଃ ମଞ୍ଚ ଅନ୍ଧକାର
ହୋଇ ଆସିଛି ।
କମ୍ପୋଜିସନ୍‌ରେ ଥିବା
ସମସ୍ତ ଚରିତ୍ର
ସମବେତ କଣ୍ଠରେ
କହି ଉଠିଛନ୍ତି—]

ସମସ୍ତେ : ପାପ—
ଯେତେ ଶ୍ରେଷ୍ଠ ହେଉ ପଛେ
ତାହା ନିଶ୍ଚିତ ଭାବେ ପାପ !
ଅପରାଧ—
ଶ୍ରେଷ୍ଠ ହେଉ ବା ବଡ଼ ହେଉ
ଶାସ୍ତି ହିଁ ତାହାର ପରିଣାମ !!

[ସମବେତ ଧ୍ୱନି
ନେପଥ୍ୟରେ ପ୍ରତିଧ୍ୱନିତ
ହେବା ସଙ୍ଗେ ସଙ୍ଗେ
ଯବନିକାର ମନ୍ଥ
ପତନ ଘଟିଛି ॥ ]